॥ श्रीहरिः ॥

1203▲

# ନଳ-ଦମୟନ୍ତୀ

नल-दमयन्ती (ओड़िआ)



गीताप्रेस गोरखपुर
GITA PRESS, GORAKHPUR [SINCE 1923]

ଗୀତାପ୍ରେସ, ଗୋରକ୍ଷପୁର

1203

॥ ଶ୍ରୀହରିଃ ॥

# ନଳ-ଦମୟନ୍ତୀ

नल-दमयन्ती ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଜୟଦୟାଲ ଗୋୟନ୍ଦକା

*Books are also available at—*

1. Gita Press, Gorakhpur Ki Pustak-Dukan, Bharatiya Towers, Badam Badi, Cuttack © (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road, Kolkata © (033) 40605293, 22680251; 22686894

Sixteenth Reprint 2020 1,000

Total 72,000

❖ **Price : ₹ 6**

**( Six Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone: (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

॥ ଶ୍ରୀହରିଃ ॥

# ନମ୍ର ନିବେଦନ

ମହର୍ଷି ବେଦବ୍ୟାସଙ୍କ ନିମନ୍ତେ କୁହାଯାଇଛି—**"ଅଚତୁର୍ବଦନୋ ବ୍ରହ୍ମା ଦ୍ୱିବାହୁରପରୋ ହରିଃ । ଅଭାଲଲୋଚନଃ ଶମ୍ଭୁଃ ଭଗବାନ୍ ବାଦରାୟଣଃ ॥"** ଅର୍ଥାତ୍ ଭଗବାନ୍ ବେଦବ୍ୟାସଙ୍କର ଚତୁର୍ମୁଖ ନ ଥିଲେ ମଧ୍ୟ ସେ ବ୍ରହ୍ମା ଅଟନ୍ତି, ସେ ଦୁଇଭୁଜବିଶିଷ୍ଟ ହୋଇଥିଲେ ମଧ୍ୟ ଦ୍ୱିତୀୟ ବିଷ୍ଣୁ ଅଟନ୍ତି ଏବଂ ତାଙ୍କର ଲଲାଟରେ ତୃତୀୟ ନେତ୍ର ନ ଥିଲେ ମଧ୍ୟ ଶିବ ଅଟନ୍ତି ଅର୍ଥାତ୍ ସେ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସ୍ୱରୂପ । ଜଗତରେ ଯେତେ ଯାହା କଲ୍ୟାଣକାରୀ ତଥା ଉତ୍କୃଷ୍ଟ କଥା ରହିଛି, ସେସବୁ ବ୍ୟାସଦେବଙ୍କର ଉଚ୍ଛିଷ୍ଟରୂପେ ଗଣ୍ୟ—**'ବ୍ୟାସୋଚ୍ଛିଷ୍ଟଂ ଜଗତ୍ସର୍ବମ୍'** । ସେହି ବ୍ୟାସଦେବ ହିଁ ରଚନା କରିଛନ୍ତି ମହାଭାରତ । ଉକ୍ତ ମହାଭାରତକୁ ସଂକ୍ଷିପ୍ତରୂପ ଦେଇଛନ୍ତି ତତ୍ତ୍ୱଜ୍ଞ ଭଗବତ୍ପ୍ରେମୀ ଜୀବନ୍ମୁକ୍ତ ମହାପୁରୁଷ ଶ୍ରୀ ଜୟଦୟାଲ ଗୋୟନ୍ଦକା (ଶେଠଜୀ) । ଏହିରୂପେ ମୂଳ ସଂସ୍କୃତରେ ବ୍ୟାସଦେବଙ୍କ ଦ୍ୱାରା ତଥା ସଂକ୍ଷିପ୍ତରୂପେ ଶେଠଜୀଙ୍କ ଦ୍ୱାରା (ହିନ୍ଦୀରେ) ଲିଖିତ ମହାଭାରତରୁ ସମସ୍ତଙ୍କ ପାଇଁ ଉପଯୋଗୀ ହେଲା ଭଳି କେତେକ ଆଖ୍ୟାନ ଚୟନ କରାଯାଇଛି । ଏହି ସବୁ ଆଖ୍ୟାନରେ କିଛି ନା କିଛି ବିଶେଷ ଶକ୍ତି ରହିଛି ଏବଂ ଏଗୁଡ଼ିକୁ ପଢ଼ିଲେ ପାଠକକୁ ବହୁତ ଉପକାର ମିଳେ । ସେହି ଆଖ୍ୟାନଗୁଡ଼ିକ ମଧ୍ୟରୁ ନଳ ଓ ଦମୟନ୍ତୀଙ୍କ ଚରିତ ପାଠକମାନଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତକରେ ସଂକଳିତ କରାଯାଉଛି । ପାଠକମାନଙ୍କୁ ମୋର ବିନମ୍ର ନିବେଦନ ଯେ ସେମାନେ ଉକ୍ତ ପୁସ୍ତକକୁ ନିଜେ ପଢ଼ିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ପଢ଼ିବାକୁ ପ୍ରେରଣା ଦେବେ ।

ବିନୀତ—

**ସ୍ୱାମୀ ରାମସୁଖଦାସ**

॥ ଶ୍ରୀହରିଃ ॥

# ନଳ-ଦମୟନ୍ତୀ କଥା

**କର୍କୋଟକସ୍ୟ ନାଗସ୍ୟ ଦମୟନ୍ତ୍ୟା ନଳସ୍ୟ ଚ ।**
**ଋତୁପର୍ଣ୍ଣସ୍ୟ ରାଜର୍ଷେଃ କୀର୍ତ୍ତନଂ କଳିନାଶନମ୍ ॥**

ମହାତ୍ମା ଅର୍ଜୁନ ଅସ୍ତ୍ର ପାଇବା ଆଶାରେ ଇନ୍ଦ୍ରଲୋକକୁ ଗଲାବେଳେ ପାଣ୍ଡବମାନେ କାମ୍ୟକ ବନରେ ବାସ କରୁଥିଲେ । ସେମାନେ ରାଜ୍ୟ ହରାଇ ଏବଂ ଅର୍ଜୁନଙ୍କ ବିଚ୍ଛେଦରେ ବଡ଼ ଦୁଃଖୀ ଥିଲେ । ଦିନକର କଥା, ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ବସି ସେହି ବିଷୟରେ କିଛି ଆଲୋଚନା କରୁଥିଲେ । ଧର୍ମରାଜ ଯୁଧିଷ୍ଠିର ଭୀମସେନଙ୍କୁ ବୁଝାଉଥିବା ବେଳେ ମହର୍ଷି ବୃହଦଶ୍ୱ ସେମାନଙ୍କ ଆଶ୍ରମକୁ ଆସୁଥିବାର ଦେଖାଗଲା ।

ମହର୍ଷି ବୃହଦଶ୍ୱଙ୍କୁ ଦେଖି ଧର୍ମରାଜ ଯୁଧିଷ୍ଠିର ଆଗେଇ ଯାଇ ଶାସ୍ତ୍ର ବିଧି ଅନୁସାରେ ତାଙ୍କୁ ପୂଜା କଲେ ଏବଂ ପାଛୋଟି ଆଣି ଆସନରେ ବସାଇଲେ । ସେ ବିଶ୍ରାମ କରିସାରିବା ପରେ ଯୁଧିଷ୍ଠିର ତାଙ୍କୁ ନିଜର ବୃତ୍ତାନ୍ତ କହିଲେ । ସେ କହିଲେ, ‘‘ହେ ମହାମୁନି ! କୌରବମାନେ ମୋତେ ଛଳକରି ଢକେଇ ଏବଂ କପଟରେ ଜୁଆ ଖେଳି ମୋ ଭଳି ଅଜାଣୁଆକୁ ହରାଇଦେଲେ ଏବଂ ମୋର ପ୍ରାଣପ୍ରିୟା ଦ୍ରୌପଦୀକୁ ଘୋଷାରି ଆଣି ପରିପୂର୍ଣ୍ଣ ସଭାରେ ତାକୁ ଅପମାନିତ କଲେ । ଶେଷରେ ସେମାନେ ଆମକୁ କଳା ମୃଗଛାଲ ପିନ୍ଧାଇ ଘୋର ବନକୁ ପଠାଇ ଦେଲେ । ହେ ମହର୍ଷି ! ଆପଣ ହିଁ କୁହନ୍ତୁ, ଏହି ପୃଥିବୀରେ ମୋ ଭଳି ଭାଗ୍ୟହୀନ ରାଜା କ’ଣ ଆଉ କେହି ଅଛି? ଆପଣ କ’ଣ ମୋ ଭଳି ଦୁଃଖୀ ଆଉ କେଉଁଠି ଦେଖିଛନ୍ତି କିଂବା ଶୁଣିଛନ୍ତି ?’’

ମହର୍ଷି ବୃହଦଶ୍ୱ କହିଲେ—ହେ ଧର୍ମରାଜ ! ଆପଣଙ୍କର ଏପରି କହିବା ଠିକ୍ ନୁହେଁ ଯେ, ମୋ ଭଳି ଦୁଃଖୀ ରାଜା ଆଉ କେହି ନାହାନ୍ତି; କାରଣ ତୁମଠାରୁ ମଧ୍ୟ ଅଧିକ ଦୁଃଖୀ ଏବଂ ମନ୍ଦଭାଗ୍ୟ ରାଜାଙ୍କ ବୃତ୍ତାନ୍ତ ମୁଁ ଜାଣିଛି । ତୁମେ ଯଦି ଶୁଣିବାକୁ ଚାହିଁବ, ତେବେ ମୁଁ ଶୁଣାଇବି ।

ଧର୍ମରାଜ ଯୁଧିଷ୍ଠିରଙ୍କର ଇଚ୍ଛା ଦେଖି ମହର୍ଷି ବୃହଦଶ୍ୱ କହିବା ଆରମ୍ଭ କଲେ ।

## ଦମୟନ୍ତୀଙ୍କର ସ୍ୱୟଂବର ଓ ବିବାହ

ହେ ଧର୍ମରାଜ! ନିଷଧ ଦେଶରେ ବୀରସେନଙ୍କ ପୁତ୍ର ନଳ ନାମକ ଜଣେ ରାଜା ଥିଲେ । ସେ ଅତ୍ୟନ୍ତ ଗୁଣବାନ, ପରମ ସୁନ୍ଦର, ସତ୍ୟବାଦୀ, ଜିତେନ୍ଦ୍ରିୟ, ସମସ୍ତଙ୍କର ପ୍ରିୟ, ବେଦଜ୍ଞ ଏବଂ ବ୍ରାହ୍ମଣଭକ୍ତ ଥିଲେ । ତାଙ୍କର ବହୁତ ବଡ଼ ସୈନ୍ୟବାହିନୀ ଥିଲା । ସେ ନିଜେ ମଧ୍ୟ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ଖୁବ୍ ପାରଙ୍ଗମ ଥିଲେ। ସେ ବୀର, ଯୋଦ୍ଧା, ଉଦାର ଏବଂ ପ୍ରବଳ ପରାକ୍ରମୀ ମଧ୍ୟ ଥିଲେ। ତାଙ୍କର ଜୁଆଖେଳରେ ମଧ୍ୟ କିଛି କିଛି ସଉକ ଥିଲା । ସେହି ସମୟରେ ବିଦର୍ଭ ଦେଶରେ ଭୀମ ନାମକ ଜଣେ ରାଜା ରାଜୁତି କରୁଥିଲେ। ସେ ମଧ୍ୟ ନଳଙ୍କ ଭଳି ସର୍ବଗୁଣସମ୍ପନ୍ନ ଏବଂ ପରାକ୍ରମୀ ଥିଲେ। ସେ ଦମନ ଋଷିଙ୍କୁ ପ୍ରସନ୍ନ କରି ତାଙ୍କ ବରଦାନରେ ଚାରୋଟି ସନ୍ତାନ ଲାଭ କରିଥିଲେ—ତିନିପୁତ୍ର ଏବଂ ଗୋଟିଏ କନ୍ୟା। ପୁତ୍ରମାନଙ୍କର ନାମ ଥିଲା—ଦମ, ଦାନ୍ତ ଓ ଦମନ। କନ୍ୟାର ନାମ ଥିଲା—ଦମୟନ୍ତୀ। ଦମୟନ୍ତୀ ଲକ୍ଷ୍ମୀଙ୍କ ପରି ରୂପବତୀ ଥିଲେ। ତାଙ୍କର ଆଖି ବଡ଼ ବଡ଼ ଓ ସୁନ୍ଦର ଥିଲା । ଦେବତା ଏବଂ ଯକ୍ଷମାନଙ୍କ ସମାଜରେ ମଧ୍ୟ ଏତେ ସୁନ୍ଦରୀ କନ୍ୟା କେଉଁଠି ଦେଖିବାକୁ ମିଳୁ ନ ଥିଲେ । ସେହି ସମୟରେ ବିଦର୍ଭରୁ ଅନେକ ଲୋକ ନିଷଧ ଦେଶକୁ ଆସୁଥିଲେ ଏବଂ ରାଜା ନଳଙ୍କ ଆଗରେ ଦମୟନ୍ତୀଙ୍କ ରୂପ ଏବଂ ଗୁଣ କଥା କହୁଥିଲେ। ନିଷଧ ଦେଶରୁ ବିଦର୍ଭକୁ ଯିବା ଲୋକେ ମଧ୍ୟ ଦମୟନ୍ତୀଙ୍କ ଆଗରେ ରାଜା ନଳଙ୍କର ରୂପ, ଗୁଣ ଏବଂ ପବିତ୍ର ଚରିତ୍ର ବିଷୟରେ ବର୍ଣ୍ଣନା କରୁଥିଲେ। ଏଇଥିରୁ ଦୁଇଜଣଙ୍କ ହୃଦୟରେ ପରସ୍ପର ପ୍ରତି ଅନୁରାଗ ଅଙ୍କୁରିତ ହେଲା ।

ଦିନେ ରାଜା ନଳ ନିଜର ପ୍ରାସାଦ ନିକଟସ୍ଥ ଉଦ୍ୟାନରେ କିଛି ହଂସଙ୍କୁ ଦେଖିଲେ। ସେ ସେଥିରୁ ଗୋଟିଏ ହଂସକୁ ଧରି ପକାଇଲେ।

ହଂସଟି କହିଲା—"ଆପଣ ଯଦି ମୋତେ ଛାଡ଼ିଦେବେ, ତାହା ହେଲେ ଆମେ ସମସ୍ତେ ଦମୟନ୍ତୀଙ୍କ ପାଖକୁ ଯାଇ ଆପଣଙ୍କର ଗୁଣ ଏପରି ବର୍ଣ୍ଣନା କରିବୁ ଯେ, ସେ ନିଶ୍ଚୟ ଆପଣଙ୍କୁ ବରଣ କରିବେ। ନଳ ହଂସଟିକୁ ଛାଡ଼ିଦେଲେ। ତାପରେ ସେମାନେ ଉଡ଼ି ଉଡ଼ି ବିଦର୍ଭ ଦେଶକୁ ଗଲେ। ଦମୟନ୍ତୀ ନିଜ ପାଖରେ ହଂସମାନଙ୍କୁ ଦେଖି ବହୁତ ଖୁସୀ ହୋଇ ହଂସମାନଙ୍କୁ ଧରିବା ପାଇଁ ତାଙ୍କ ଆଡ଼କୁ ଦୌଡ଼ିଲେ। ଦମୟନ୍ତୀ ଯେଉଁ ହଂସଟିକୁ ଧରିବା ପାଇଁ ଦୌଡ଼ନ୍ତି ସେ କହେ, "ଆଗୋ ଦମୟନ୍ତୀ! ନିଷଧ ଦେଶରେ ନଳ ନାମକ ଜଣେ ରାଜା ଅଛନ୍ତି। ସେ ଅଶ୍ୱିନୀକୁମାରଙ୍କ ଭଳି ସୁନ୍ଦର। ମନୁଷ୍ୟମାନଙ୍କ ମଧ୍ୟରେ ତାଙ୍କ ଭଳି ସୁନ୍ଦର ଆଉ କେହି ନାହାନ୍ତି। ସତେ ଯେପରି ସେ ମୂର୍ତ୍ତିମନ୍ତ କାମଦେବ ଅଟନ୍ତି। ତୁମେ ଯଦି ତାଙ୍କର ପତ୍ନୀ ହୋଇପାରିବ, ତୁମର ଜନ୍ମ ଏବଂ ରୂପ ଦୁଇଟି ଯାକ ସଫଳ ହୋଇଯିବ। ଆମ୍ଭେମାନେ ଅନେକ ଦେବତା, ଗନ୍ଧର୍ବ, ନାଗ ଏବଂ ରାକ୍ଷସମାନଙ୍କୁ ଦେଖିଛୁ; କିନ୍ତୁ ନଳଙ୍କ ସମାନ ସୁନ୍ଦର ପୁରୁଷ କେଉଁଠି ଦେଖିବାକୁ ପାଇନାହୁଁ। ତୁମେ ଯେପରି ନାରୀମାନଙ୍କ ମଧ୍ୟରେ ରତ୍ନ, ନଳ ସେହିପରି ପୁରୁଷମାନଙ୍କ ମଧ୍ୟରେ ଭୂଷଣ (ଶ୍ରେଷ୍ଠ) ଅଟନ୍ତି। ତୁମ ଦୁଇଜଣଙ୍କର ଯୋଡ଼ି ଖୁବ୍ ସୁନ୍ଦର ହେବ।" ଦମୟନ୍ତୀ କହିଲେ, "ହଂସ! ତୁମେ ନଳଙ୍କୁ ମଧ୍ୟ ଏହିଭଳି କହିବ।" ହଂସମାନେ ନିଷଧ ଦେଶକୁ ଫେରି ନଳଙ୍କୁ ଦମୟନ୍ତୀଙ୍କର ସନ୍ଦେଶ ଦେଲେ।

ଦମୟନ୍ତୀ ହଂସଙ୍କ ମୁହଁରୁ ରାଜା ନଳଙ୍କର କୀର୍ତ୍ତି ଶୁଣି ମନ ମଧ୍ୟରେ ତାଙ୍କୁ ପ୍ରେମ କରିବାକୁ ଲାଗିଲେ। ତାଙ୍କର ଆସକ୍ତି ଏତେ ବଢ଼ିଗଲା ଯେ ସେ ରାତି ଦିନ ତାଙ୍କୁ ହିଁ ଚିନ୍ତନ କରିବାରେ ମଗ୍ନ ରହିଲେ। ତେଣୁ ତାଙ୍କ ତନୁ କ୍ଷୀଣ ହୋଇଗଲା ଏବଂ ସେ ବିବର୍ଣ୍ଣ ଦିଶିଲେ। ସେ ଅତି ଦୁଃଖିନୀ ପରି ଜଣାପଡ଼ିଲେ। ସଖୀମାନେ ଦମୟନ୍ତୀଙ୍କ ହୃଦୟର ଭାବ ଜାଣି ବିଦର୍ଭରାଜାଙ୍କୁ ନିବେଦନ କଲେ, "ଆପଣଙ୍କ କନ୍ୟା ଅସୁସ୍ଥ ହୋଇଗଲାଣି"। ରାଜା ଭୀମ ନିଜର କନ୍ୟା ସମ୍ବନ୍ଧରେ ଗଭୀର ବିଚାର କଲେ। ଶେଷରେ ଏହି ନିର୍ଣ୍ଣୟରେ ପହଞ୍ଚିଲେ ଯେ

"ମୋର କନ୍ୟା ବିବାହଯୋଗ୍ୟା ହୋଇଗଲାଣି। ତେଣୁ ତାର ସ୍ୱୟଂବର କରିଦେବା ଉଚିତ ହେବ।" ସେ ସମସ୍ତ ରାଜାଙ୍କ ପାଖକୁ ସ୍ୱୟଂବର ପାଇଁ ନିମନ୍ତ୍ରଣ ପତ୍ର ପଠାଇଲେ ଏବଂ ଏଭଳି ଜଣାଇଦେଲେ ଯେ, "ରାଜାମାନେ ଦମୟନ୍ତୀର ସ୍ୱୟଂବରରେ ଯୋଗଦାନ କରି ଏ ସୁଯୋଗର ଲାଭ ଉଠାଇବା ସହିତ ମୋର ମନସ୍କାମନା ପୂର୍ଣ୍ଣ କରିବେ ବୋଲି ଆଶା।" ଏହା ଜାଣି ଦେଶ ବିଦେଶର ନରପତିମାନେ ହାତୀ, ଘୋଡ଼ା ଏବଂ ରଥମାନଙ୍କର ଶବ୍ଦରେ ପୃଥିବୀକୁ ମୁଖରିତ କରି ସମସ୍ତ ସାଜସଜ୍ଜା ସହ ବିଦର୍ଭ ଦେଶରେ ପହଞ୍ଚିବାକୁ ଲାଗିଲେ। ରାଜା ଭୀମ ସମସ୍ତଙ୍କର ସ୍ୱାଗତ ସତ୍କାର ପାଇଁ ସମୁଚିତ ବ୍ୟବସ୍ଥା କଲେ।

ଦେବର୍ଷି ନାରଦ ଏବଂ ପର୍ବତ ଋଷିଙ୍କ ଦ୍ୱାରା ଦେବତାମାନଙ୍କୁ ମଧ୍ୟ ଦମୟନ୍ତୀଙ୍କର ସ୍ୱୟଂବର ସଂବାଦ ମିଳିଗଲା। ଇନ୍ଦ୍ର ଆଦି ସମସ୍ତ ଲୋକପାଳ ନିଜ ନିଜର ପାରିଷଦ ଏବଂ ବାହନ ସହିତ ବିଦର୍ଭ ଦେଶ ଆସିବା ପାଇଁ ବାହାରି ପଡ଼ିଲେ। ରାଜା ନଳଙ୍କର ମନ ତ ପ୍ରଥମରୁ ହିଁ ଦମୟନ୍ତୀଙ୍କ ପ୍ରତି ଆସକ୍ତ ଥିଲା। ତେଣୁ ସେ ମଧ୍ୟ ଦମୟନ୍ତୀଙ୍କ ସ୍ୱୟଂବରରେ ସମ୍ମିଳିତ ହେବା ପାଇଁ ବିଦର୍ଭ ଦେଶକୁ ଯାତ୍ରା କଲେ। ଦେବତାମାନେ ସ୍ୱର୍ଗରୁ ଓହ୍ଲାଇବା ସମୟରେ ଦେଖିଲେ ଯେ କାମଦେବଙ୍କ ପରି ସୁନ୍ଦର ରାଜା ନଳ ଦମୟନ୍ତୀଙ୍କ ସ୍ୱୟଂବରକୁ ଯାଉଛନ୍ତି। ନଳଙ୍କର ସୂର୍ଯ୍ୟସମ କାନ୍ତି ଓ ରୂପଗାରିମା ଦେଖି ଦେବତାମାନେ ଚକିତ ହୋଇଗଲେ। ସେମାନେ ଚିହ୍ନିଗଲେ ଯେ, ଏ ହେଉଛନ୍ତି ନଳ। ସେମାନେ ନିଜ ନିଜ ବିମାନକୁ ଆକାଶରେ ରଖି ତଳକୁ ଓହ୍ଲାଇ ନଳଙ୍କୁ କହିଲେ—"ରାଜେନ୍ଦ୍ର ନଳ! ଆପଣ ବଡ଼ ସତ୍ୟବାଦୀ। ଆପଣ ଆଜି ଆମ୍ଭମାନଙ୍କର ଦୂତ ହୋଇ ଆମ୍ଭମାନଙ୍କୁ ଟିକିଏ ସାହାଯ୍ୟ କରନ୍ତୁ।" ନଳ ପ୍ରତିଜ୍ଞା କଲେ ଏବଂ କହିଲେ "ନିଶ୍ଚୟ କରିବି।" ତାପରେ ପଗ୍ଚରିଲେ, "ଆପଣମାନେ କିଏ ଓ ମୋତେ ଦୂତ କରି ମୋଦ୍ୱାରା କେଉଁ କାମ କରାଇବାକୁ ଗ୍ଚହାନ୍ତି?" ଇନ୍ଦ୍ର କହିଲେ—"ଆମ୍ଭେମାନେ ହେଉଛୁ ଦେବତା। ମୁଁ ଇନ୍ଦ୍ର ଆଉ ଏମାନେ ହେଉଛନ୍ତି ଅଗ୍ନି, ବରୁଣ ଓ ଯମ। ଆମ୍ଭେମାନେ ଦମୟନ୍ତୀକୁ ପାଇବା ପାଇଁ ଏଠାକୁ ଆସିଛୁ। ଆପଣ ଆମର ଦୂତ ହୋଇ ଦମୟନ୍ତୀ

ପାଖକୁ ଯାଆନ୍ତୁ ଏବଂ କୁହନ୍ତୁ, ଇନ୍ଦ୍ର, ବରୁଣ, ଅଗ୍ନି ଓ ଯମଦେବତା ତୁମକୁ ବିବାହ କରିବା ପାଇଁ ଚାହାନ୍ତି। ଏମାନଙ୍କ ମଧ୍ୟରୁ ତୁମେ ଯାହାକୁ ଚାହୁଁଛ ସ୍ୱାମୀ ରୂପରେ ବରଣ କରିପାର।'' ନଳ ଦୁଇହାତ ଯୋଡ଼ି କହିଲେ ''ଦେବରାଜ! ଆପଣମାନଙ୍କର ଓ ମୋର ସେଠାକୁ ଯିବାର ଲକ୍ଷ୍ୟ ହେଉଛି ଗୋଟିଏ। ଏଣୁ ଆପଣ ମୋତେ ଦୂତ କରି ସେଠାକୁ ପଠାଇବା ଉଚିତ ହେବ ନାହିଁ। ଯାହାର କୌଣସି ନାରୀକୁ ପତ୍ନୀରୂପେ ପାଇବାକୁ ଇଚ୍ଛା ଥିବ, ସେ ଭଲା କେମିତି ତାକୁ ଛାଡ଼ି ପାରିବ ଆଉ ତା ପାଖକୁ ଯାଇ ଏପରି କଥା କେମିତି କହି ପାରିବ? ଆପଣମାନେ ଦୟା କରି ଏ ବିଷୟରେ ମୋତେ କ୍ଷମା କରନ୍ତୁ।''* ଦେବତାମାନେ କହିଲେ, ''ନଳ! ତୁମେ ପ୍ରଥମରୁ ଆମ ପାଖରେ ପ୍ରତିଜ୍ଞା କରି ସାରିଛ ଯେ ତୁମେ ଆମ କାମ କରିବ। ଏବେ ପ୍ରତିଜ୍ଞା ଭଙ୍ଗ କର ନାହିଁ। ଆଉ ବିଳମ୍ବ ନ କରି ତୁମେ ସେଠାକୁ ଯାଅ।'' ନଳ କହିଲେ, ''ରାଜମହଲରେ ସବୁବେଳେ କଡ଼ା ପହରା ଥାଏ, ମୁଁ କେମିତି ଯିବି?'' ଇନ୍ଦ୍ର କହିଲେ—''ଯାଅ, ଆମ ପ୍ରଭାବରେ ତୁମେ ସେଠାକୁ ଯାଇ ପାରିବ।'' ଇନ୍ଦ୍ରଙ୍କର ଆଜ୍ଞାରେ ନଳ ରାଜମହଲକୁ ବିନା ବାଧାରେ ପ୍ରବେଶ କରି ଦମୟନ୍ତୀକୁ ଦେଖିଲେ। ଦମୟନ୍ତୀ ଓ ସଖୀମାନେ ତାଙ୍କୁ ଦେଖି ଅବାକ୍ ହୋଇଗଲେ। ସେମାନେ ଏଭଳି ଅନୁପମ ସୁନ୍ଦର ପୁରୁଷକୁ ଦେଖି ମୁଗ୍ଧ ହୋଇଗଲେ ଓ ଲଜ୍ଜିତ ହୋଇ କିଛି କହି ପାରିଲେ ନାହିଁ।

ଦମୟନ୍ତୀ ପ୍ରକୃତିସ୍ଥ ହୋଇ ରାଜା ନଳଙ୍କୁ କହିଲେ, ''ବୀର! ତୁମେ ଦେଖିବାକୁ ଖୁବ୍ ସୁନ୍ଦର ଓ ନିର୍ଦ୍ଦୋଷ ଜଣାପଡୁଛ। ପ୍ରଥମେ ତୁମର ପରିଚୟ ଦିଅ। ତୁମେ ଏଠାକୁ କେଉଁ ଉଦ୍ଦେଶ୍ୟରେ ଆସିଛ ଏବଂ ଆସିବା ସମୟରେ ଦ୍ୱାରପାଳମାନେ ତୁମକୁ ଦେଖି ପାରିଲେ ନାହିଁ କେମିତି? ସେମାନଙ୍କର ଟିକିଏ ଭୁଲ୍ ହୋଇଗଲେ ମୋ ପିତା ସେମାନଙ୍କୁ କଠିନ ଦଣ୍ଡ ଦିଅନ୍ତି।'' ନଳ କହିଲେ, ''କଲ୍ୟାଣି! ମୁଁ ହେଉଛି ନଳ।

---

*** କଥଂ ତୁ ଜାତସଙ୍କଳ୍ପଃ ସ୍ତ୍ରିୟମୁତ୍ସୃଜତେ ପୁମାନ୍।**
**ପରାର୍ଥମୀଦୃଶଂ ବକ୍ତୁଂ ତତ୍ କ୍ଷମନ୍ତୁ ମହେଶ୍ୱରାଃ॥**

(ମହାଭା. ବନ. ୫୫।୮)

ଲୋକପାଳମାନଙ୍କର ଦୂତ ହୋଇ ତୁମ ପାଖକୁ ଆସିଛି । ସୁନ୍ଦରି! ଇନ୍ଦ୍ର, ଅଗ୍ନି, ବରୁଣ ଓ ଯମ ଏ ଚାରିଜଣ ଦେବତା ତୁମକୁ ବିବାହ କରିବାକୁ ଚାହାନ୍ତି । ତୁମେ ଏମାନଙ୍କ ମଧ୍ୟରୁ ଯେକୌଣସି ଜଣେ ଦେବତାଙ୍କୁ ନିଜର ସ୍ୱାମୀରୂପରେ ବରଣ କର । ଏହି ସନ୍ଦେଶ ନେଇ ମୁଁ ତୁମ ପାଖକୁ ଆସିଛି । ଯେତେବେଳେ ମୁଁ ତୁମ ମହଲରେ ପ୍ରବେଶ କଲି, ଏହି ଦେବତାମାନଙ୍କ ପ୍ରଭାବରେ ମୋତେ କେହି ଦେଖି ପାରିଲେ ନାହିଁ । ମୁଁ ଦେବତାମାନଙ୍କର ସନ୍ଦେଶ ଶୁଣାଇଦେଲି । ଏବେ ତୁମର ଯାହା ଇଚ୍ଛା ହେଉଛି, ତାହା କର ।'' ଦମୟନ୍ତୀ ଶ୍ରଦ୍ଧାର ସହିତ ଦେବତାମାନଙ୍କୁ ମନେ ମନେ ପ୍ରଣାମ କରି ମନ୍ଦ ମନ୍ଦ ହସି ନଳଙ୍କୁ କହିଲେ, ''ନରେନ୍ଦ୍ର! ଆପଣ ମୋତେ ପ୍ରେମ ଦୃଷ୍ଟିରେ ଦେଖନ୍ତୁ ଏବଂ ମୁଁ ଯଥାଶକ୍ତି ଆପଣଙ୍କର କି ସେବା କରିପାରିବି, ତାହା ଆଦେଶ କରନ୍ତୁ । ଆପଣ ହିଁ ମୋର ସ୍ୱାମୀ! ମୁଁ ମୋର ସର୍ବସ୍ୱକୁ ଏବଂ ନିଜକୁ ଆପଣଙ୍କ ଚରଣ ତଳେ ସମର୍ପି ଦେଇଛି । ଆପଣ ମୋ ପ୍ରତି ବିଶ୍ୱାସପୂର୍ଣ୍ଣ ପ୍ରେମ କରନ୍ତୁ । ଯେଉଁଦିନ ମୁଁ ହଂସମାନଙ୍କ ମୁହଁରୁ ଆପଣଙ୍କ କଥା ଶୁଣିଲି, ସେହିଦିନଠାରୁ ମୁଁ ଆପଣଙ୍କ ପାଇଁ ବ୍ୟାକୁଳ । ଆପଣଙ୍କ ପାଇଁ ହିଁ ମୁଁ ରାଜାମାନଙ୍କୁ ଏଠାକୁ ଡକାଇଛି । ଯଦି ଆପଣ ଏହି ଦାସୀର ପ୍ରାର୍ଥନା ଅସ୍ୱୀକାର କରିବେ, ତା'ହେଲେ ମୁଁ ବିଷ ଖାଇ, ନିଆଁରେ ପୋଡ଼ି ହୋଇ, ପାଣିରେ ବୁଡ଼ି, ନଚେତ୍ ଗଳାରେ ଦଉଡ଼ି ଦେଇ ଆପଣଙ୍କ ପାଇଁ ପ୍ରାଣ ହରାଇଦେବି ।''

ରାଜା ନଳ କହିଲେ, ''ଯେତେବେଳେ ବଡ଼ ବଡ଼ ଲୋକପାଳ ତୁମର ପ୍ରଣୟ ପ୍ରାର୍ଥୀ, ସେତେବେଳେ ତୁମେ ମୋ ଭଳି ମନୁଷ୍ୟକୁ କାହିଁକି ଚାହୁଁଛ? ମୁଁ ତ ସେହି ଐଶ୍ୱର୍ଯ୍ୟଶାଳୀ ଦେବତାମାନଙ୍କ ଚରଣ ରେଣୁ ସହିତ ବି ସମାନ ନୁହେଁ । ତୁମେ ଏଥର ତାଙ୍କ ଠାରେ ମନ ଲଗାଅ । ଦେବତାମାନଙ୍କର ଅପ୍ରିୟ ହେଲେ ମନୁଷ୍ୟର ମୃତ୍ୟୁ ହୋଇଯାଏ । ତୁମେ ମୋତେ ରକ୍ଷା କର ଏବଂ ସେମାନଙ୍କୁ ବରଣ କର ।'' ନଳଙ୍କର କଥା ଶୁଣି ଦମୟନ୍ତୀ ବ୍ୟାକୁଳ ହୋଇଗଲେ । ତାଙ୍କର ନେତ୍ରଦ୍ୱୟ ଅଶ୍ରୁ ଛଳଛଳ ହୋଇଗଲା । ସେ କହିଲେ, ''ମୁଁ ସମସ୍ତ ଦେବତାଙ୍କୁ ପ୍ରଣାମ କରି ଆପଣଙ୍କୁ ହିଁ ପତି ରୂପରେ ବରଣ କରୁଛି । ମୁଁ ଏହା ସତ୍ୟ ଶପଥ କରି

କହୁଛି*।'' ଏହା କହିବା ସମୟରେ ଦମୟନ୍ତୀଙ୍କର ଶରୀର ଥରଥର କମ୍ପୁଥିଲା ଏବଂ ସେ ଯୋଡ଼ହସ୍ତ ଥିଲେ।

ରାଜା ନଳ କହିଲେ, ''ଆଚ୍ଛା, ତାହା ହିଁ କର। କିନ୍ତୁ କହିଲ ଦେଖି, ମୁଁ ଏଠାକୁ ସେମାନଙ୍କର ଦୂତ ହୋଇ ସନ୍ଦେଶ ଦେବା ପାଇଁ ଆସିଛି। ଯଦି ଏହି ସମୟରେ ମୁଁ ନିଜର ସ୍ୱାର୍ଥ ପାଇଁ କାମ କରିବି, ତାହାହେଲେ କେଡ଼େ ମନ୍ଦକଥା ହେବ! ମୁଁ ନିଜର ସ୍ୱାର୍ଥ ସେତିକିବେଳେ ଦେଖିବି, ଯଦି ତାହା ଧର୍ମ ବିରୁଦ୍ଧ ହୋଇ ନ ଥିବ। ତୁମେ ମଧ୍ୟ ଏପରି କରିବା ଉଚିତ।'' ଦମୟନ୍ତୀ ଗଦ୍‌ଗଦ କଣ୍ଠରେ କହିଲେ, ''ନରେଶ୍ୱର ! ଏଥିପାଇଁ ଏକ ନିର୍ଦ୍ଦୋଷ ଉପାୟ ଅଛି। ସେହି ଅନୁସାରେ କାମ କଲେ ଆପଣଙ୍କୁ କିଛି ଦୋଷ ଲାଗିବ ନାହିଁ। ଆପଣ ଦେବତାମାନଙ୍କ ସହିତ ସ୍ୱୟଂବର ମଣ୍ଡପକୁ ଆସନ୍ତୁ। ମୁଁ ସେମାନଙ୍କ ସମ୍ମୁଖରେ ଆପଣଙ୍କୁ ବରଣ କରିବି। ସେତେବେଳେ ଆପଣଙ୍କୁ ଦୋଷ ଲାଗିବ ନାହିଁ।'' ଏହା ପରେ ରାଜା ନଳ ଦେବତାମାନଙ୍କ ପାଖକୁ ଫେରିଆସିଲେ। ଦେବତାମାନେ ପଚ୍ଚାରିବାରୁ ସେ କହିଲେ, ''ମୁଁ ଆପଣଙ୍କ ଆଜ୍ଞାରେ ଦମୟନ୍ତୀଙ୍କ ମହଲକୁ ଗଲି। ବାହାରେ ବୁଢ଼ା ଦ୍ୱାରପାଳ ପହରା ଦେଉଥିଲା, କିନ୍ତୁ ସେ ଆପଣଙ୍କ ପ୍ରଭାବରେ ମୋତେ ଦେଖିପାରିଲା ନାହିଁ। କେବଳ ଦମୟନ୍ତୀ ଏବଂ ତାର ସଖୀମାନେ ମୋତେ ଦେଖିଲେ। ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ। ମୁଁ ଦମୟନ୍ତୀଙ୍କ ଆଗରେ ଆପଣଙ୍କ ବିଷୟରେ ବର୍ଣ୍ଣନା କଲି, କିନ୍ତୁ ସେ ତ ଆପଣମାନଙ୍କୁ ନ ଗ୍ରହିଁ ମୋତେ ହିଁ ବରଣ କରିବା ପାଇଁ ଅଡ଼ି ବସିଲେ। ସେ କହିଲେ, 'ସବୁ ଦେବତା ଆପଣଙ୍କ ସହିତ ସ୍ୱୟଂବରକୁ ଆସନ୍ତୁ। ମୁଁ ସେମାନଙ୍କ ଆଗରେ ହିଁ ଆପଣଙ୍କୁ ବରଣ କରିବି। ଏଥିରେ ଆପଣଙ୍କୁ ଦୋଷ ଲାଗିବ ନାହିଁ᳭।' ମୁଁ

---

* ଦେବେଭ୍ୟୋଽହଂ ନମସ୍କୃତ୍ୟ ସର୍ବେଭ୍ୟଃ ପୃଥିବୀପତେ।
ବୃଣେ ତ୍ୱାମେବ ଭର୍ତ୍ତାରଂ ସତ୍ୟମେତଦ୍ ବ୍ରବୀମି ତେ॥
(ମହାଭା. ବନ.୫୬।୧୪)

᳭ ତେଷାମହଂ ସନ୍ନିଧୌ ତ୍ୱାଂ ବରୟିଷ୍ୟାମି ନୈଷଧ।
ଏବଂ ତବ ମହାବାହୋ ଦୋଷୋ ନ ଭବିତେତି ହ॥
(ମହାଭା. ବନ. ୫୬।୩୦)

ଆପଣଙ୍କ ଆଗରେ ସବୁ କଥା କହିଦେଲି। ଆପଣମାନେ ନିଜେ ହିଁ ତ ସବୁ କଥାର ସତ୍ୟତାର ସାକ୍ଷୀ।''

ରାଜା ଭୀମ ଶୁଭମୁହୂର୍ତ୍ତରେ ସ୍ୱୟଂବର ସଭାର ଆୟୋଜନ କଲେ ଏବଂ ରାଜାମାନଙ୍କୁ ସଭାକୁ ଡକାଇଲେ। ରାଜାମାନେ ନିଜ ନିଜର ନିବାସ ସ୍ଥଳୀରୁ ଆସି ସ୍ୱୟଂବର ମଣ୍ଡପରେ ଯଥାସ୍ଥାନରେ ବସିଗଲେ। ପୂରା ରାଜମଣ୍ଡପଟି ରାଜାମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲା। ତା'ପରେ ସୁନ୍ଦରୀ ଦମୟନ୍ତୀ ନିଜର ଅଙ୍ଗକାନ୍ତିରେ ରାଜାମାନଙ୍କ ମନ ଏବଂ ନୟନକୁ ଆକର୍ଷିତ କରି ରଙ୍ଗମଣ୍ଡପକୁ ଆଗମନ କଲେ। ରାଜାମାନଙ୍କର ପରିଚୟ ପ୍ରଦାନ କରାଗଲା ଏବଂ ଦମୟନ୍ତୀ ଜଣ ଜଣକୁ ଦେଖି ଆଗକୁ ଆଗକୁ ଗ୍ଭଲିଲେ। ସେ ଦେଖିଲେ, ଆଗରେ ଗୋଟିଏ ସ୍ଥାନରେ ନଳଙ୍କର ଅବିକଳ ରୂପ ଏବଂ ବେଶଭୂଷାରେ ପାଞ୍ଚ ଜଣ ରାଜା ଏକାଠି ବସଛନ୍ତି। ଦମୟନ୍ତୀଙ୍କ ମନରେ ସନ୍ଦେହ ହେଲା; ସେ ରାଜା ନଳଙ୍କୁ ଚିହ୍ନି ପାରିଲେ ନାହିଁ। ସେ ଯାହାକୁ ଦେଖୁଥାନ୍ତି, ସେ ନଳ ଭଳି ଜଣାପଡୁଥାନ୍ତି। ତେଣୁ ସେ ଚିନ୍ତା କରିବାକୁ ଲାଗିଲେ, ''ମୁଁ ଦେବତାମାନଙ୍କୁ କିପରି ଚିହ୍ନିବି ଏବଂ ନଳ ରାଜା କିଏ କେମିତି ଜାଣିବି?'' ତାଙ୍କୁ ବହୁତ ଦୁଃଖ ହେଲା। ଶେଷରେ ଦମୟନ୍ତୀ ସ୍ଥିର କଲେ ଯେ ଦେବତାମାନଙ୍କ ଶରଣ ଯିବା ଉଚିତ ହେବ। ତେଣୁ ସେ ହାତ ଯୋଡ଼ି ପ୍ରଣାମ କରି ଜଣାଇଲେ ''ଦେବଗଣ! ହଂସମାନଙ୍କ ମୁଖରୁ ନଳଙ୍କ ରୂପ ଓ ଗୁଣର ବର୍ଣ୍ଣନା ଶୁଣି ମୁଁ ତାଙ୍କୁ ପତିରୂପରେ ବରଣ କରିସାରିଛି। ମୁଁ ମନ ଏବଂ ବଚନରେ ନଳଙ୍କ ବ୍ୟତୀତ ଆଉ କାହାକୁ ଗ୍ଭହେଁ ନାହିଁ। ଦେବତାମାନେ ନିଷଧେଶ୍ୱର ନଳଙ୍କୁ ହିଁ ମୋର ପତିରୂପେ ନିର୍ଦ୍ଧାରିତ କରିଛନ୍ତି ତଥା ନଳଙ୍କର ଆରାଧନା ପାଇଁ ହିଁ ଏଠାରେ ମୁଁ ବ୍ରତ ଆରମ୍ଭ କରିଛି। ମୋର ଏହି ସତ୍ୟଶପଥର ପ୍ରଭାବରେ ଦେବତାମାନେ ମୋତେ ତାଙ୍କୁ ଦେଖାଇ ଦିଅନ୍ତୁ*। ଐଶ୍ୱର୍ଯ୍ୟଶାଳୀ ଦେବଗଣ! ଆପଣମାନେ

* ବାଗ୍ଭ ଚ ମନସା ଚୈବ ନମସ୍କାରଂ ପ୍ରଯୁଜ୍ୟ ସା।
ଦେବେଭ୍ୟଃ ପ୍ରାଞ୍ଜଳିର୍ଭୂତ୍ୱା ବେପମାନେଦମବ୍ରବୀତ୍॥
ହଂସାନାଂ ବଚନଂ ଶ୍ରୁତ୍ୱା ଯଥା ମେ ନୈଷଧୋ ବୃତଃ।
ପତିତ୍ୱେ ତେନ ସତ୍ୟେନ ଦେବାସ୍ତଂ ପ୍ରଦିଶନ୍ତୁ ମେ॥

ନିଜର ପ୍ରକୃତ ରୂପ ପ୍ରକଟ କରନ୍ତୁ, ଯଦ୍ଦ୍ୱାରା ମୁଁ ପୁଣ୍ୟଶ୍ଳୋକ ନଳଙ୍କୁ ଚିହ୍ନି ପାରିବି ।'' ଦେବତାମାନେ ଦମୟନ୍ତୀଙ୍କର ଏପରି କରୁଣ ବିଳାପ ଶୁଣିଲେ । ତାଙ୍କର ଦୃଢ଼ତା, ବିଶୁଦ୍ଧ ପ୍ରେମ, ଆତ୍ମଶୁଦ୍ଧି, ବୁଦ୍ଧି, ଭକ୍ତି ଏବଂ ନଳପରାୟଣତାକୁ ଦେଖି ସେମାନେ ତାଙ୍କୁ ଏପରି ଶକ୍ତି ଦେଲେ, ଯାହାଦ୍ୱାରା ସେ ଦେବତା ଏବଂ ମନୁଷ୍ୟଙ୍କ ମଧ୍ୟରେ ଥିବା ପ୍ରଭେଦ ଜାଣିପାରିଲେ । ଦମୟନ୍ତୀ ଦେଖିଲେ, ଦେବଗଣଙ୍କ ଶରୀରରେ ଝାଳ ନାହିଁ; ଆଖିର ପଲକ ପଡୁନାହିଁ । ସେମାନଙ୍କ ଗଳାରେ ପଡ଼ିଥିବା ଫୁଲହାର ମଉଳି ଯାଇନାହିଁ । ଶରୀରରେ ମଇଳା ନାହିଁ । ସେମାନେ ସିଂହାସନରେ ବସିଛନ୍ତି, ଅଥଚ ସେମାନଙ୍କ ପାଦ ଭୂମିକୁ ସ୍ପର୍ଶ କରୁନାହିଁ । ସେମାନଙ୍କର ଛାଇ ମଧ୍ୟ ପଡୁନାହିଁ* । ପ୍ରକୃତ ନଳଙ୍କ ଶରୀରର ଛାୟା ପଡୁଅଛି; ମାଳା ମଉଳି ଯାଇଛି । ଶରୀର ଉପରେ କିଛି ମଳିଧୂଳି ଏବଂ ଝାଳ ମଧ୍ୟ ଅଛି । ଆଖିର ପଲକ ବାରଂବାର ପଡୁଛି ଏବଂ ତାଙ୍କ ପାଦ ଭୂମିକୁ ସ୍ପର୍ଶ କରୁଛି । ଦମୟନ୍ତୀ ଏହିସବୁ ଲକ୍ଷଣରୁ ଦେବତାମାନଙ୍କୁ ଏବଂ ପୁଣ୍ୟଶ୍ଳୋକ ନଳଙ୍କୁ ଚିହ୍ନିଗଲେ । ଏହାପରେ ସେ ଧର୍ମାନୁସାରେ ନଳଙ୍କୁ ବରଣ କଲେ । ଦମୟନ୍ତୀ ଟିକିଏ ଲାଜ ଲାଜ ହୋଇ ଓଢ଼ଣା ଖୋଲି ନଳଙ୍କ ଉପରେ ବରଣ ମାଳା ଲମ୍ବାଇ ଦେଲେ । ଦେବତା ଏବଂ ମହର୍ଷିମାନେ 'ସାଧୁ ସାଧୁ' କହିଉଠିଲେ । ରାଜାଙ୍କ ମଧ୍ୟରେ ହାହାକାର ପଡ଼ିଗଲା ।

ରାଜା ନଳ ଆନନ୍ଦାତିରେକରେ ଦମୟନ୍ତୀଙ୍କୁ ଅଭିନନ୍ଦନ କଲେ । ସେ କହିଲେ—''କଲ୍ୟାଣି ! ତୁମେ ଦେବତାମାନଙ୍କୁ ବରଣ ନ କରି ମୋତେ ବରଣ କଲ, ତେଣୁ ତୁମେ ମୋତେ ପ୍ରେମପରାୟଣ ପତିରୂପେ ପାଇବ । ମୁଁ ତୁମର କଥା ମାନିବି । ଯେପର୍ଯ୍ୟନ୍ତ ମୋ ଶରୀରରେ ପ୍ରାଣ

---

ମନସା ବଚସା ଚୈବ ଯଥା ନାଭିଚରାମ୍ୟହମ୍ ।
ତେନ ସତ୍ୟେନ ବିବୁଧାସ୍ତମେବ ପ୍ରଦିଶନ୍ତୁ ମେ ॥
(ମହାଭା. ବନ. ୫୭ । ୧୬-୧୮)

* ସାପଶ୍ୟଦ୍ ବିବୁଧାନ୍ ସର୍ବାନସ୍ୱେଦାନ୍ ସ୍ତବ୍ଧଲୋଚନାମ୍ ।
ହୃଷିତସ୍ରଗ୍ରଜୋହୀନାନ୍ ସ୍ଥିତାନସ୍ପୃଶତଃ କ୍ଷିତିମ୍ ॥
(ମହାଭା. ବନ. ୫୭ । ୨୪)

ରହିଥିବ, ସେପର୍ଯ୍ୟନ୍ତ ମୁଁ ତୁମକୁ ପ୍ରେମ କରିବି—ଏହା ମୁଁ ତୁମକୁ ଶପଥ କରି ସତ୍ୟ କହୁଛି ।'' ଦୁଇଜଣ ପରସ୍ପରକୁ ପ୍ରେମପୂର୍ଣ୍ଣ ଭାବରେ ଅଭିନନ୍ଦନ କରି ଇନ୍ଦ୍ରାଦି ଦେବତାମାନଙ୍କର ଶରଣ ଗଲେ । ଦେବତାମାନେ ବହୁତ ପ୍ରସନ୍ନ ହେଲେ । ସେମାନେ ନଳଙ୍କୁ ଆଠଟି ବର ପ୍ରଦାନ କଲେ । ଇନ୍ଦ୍ର କହିଲେ, ''ନଳ! ତୁମକୁ ଯଜ୍ଞରେ ମୋର ଦର୍ଶନ ମିଳିବ ଏବଂ ଉତ୍ତମ ଗତି ପ୍ରାପ୍ତ ହେବ ।'' ଅଗ୍ନି କହିଲେ, ''ତୁମେ ଯେଉଁଠାରେ ମୋତେ ସ୍ମରଣ କରିବ, ସେଠାରେ ମୁଁ ପ୍ରକଟ ହୋଇଯିବି ଏବଂ ମୋ ଭଳି ଜ୍ୟୋତିର୍ମୟ ଲୋକ ତୁମକୁ ମଧ୍ୟ ପ୍ରାପ୍ତ ହେବ ।'' ଯମରାଜ କହିଲେ, ''ତୁମ ଦ୍ୱାରା ପ୍ରସ୍ତୁତ ହୋଇଥିବା ଖାଦ୍ୟ ବହୁତ ସୁଆଦିଆ ହେବ ଏବଂ ତୁମେ ନିଜ ଧର୍ମରେ ଅଟଳ ରହିବ ।'' ବରୁଣ କହିଲେ, ''ତୁମେ ଯେଉଁଠାରେ ଗ୍ରହିଁବ, ସେଠାରେ ଜଳ ପ୍ରକଟ ହୋଇଯିବ । ତୁମର ମାଳା ସୁଗନ୍ଧିତ ହୋଇ ରହିବ ।'' ଏହିପରି ଦୁଇଟି ଲେଖାଁଏ ବର ଦେଇ ସବୁ ଦେବତା ନିଜ ନିଜ ଲୋକକୁ ପ୍ରସ୍ଥାନ କଲେ । ନିମନ୍ତ୍ରିତ ରାଜାମାନେ ମଧ୍ୟ ବିଦା ହୋଇଗଲେ । ଭୀମ ପ୍ରସନ୍ନତାପୂର୍ବକ ନଳଙ୍କ ସହିତ ଦମୟନ୍ତୀଙ୍କର ବିବାହ ବିଧିପୂର୍ବକ ସମ୍ପନ୍ନ କଲେ । ରାଜା ନଳ କିଛି ଦିନ ବିଦର୍ଭ ଦେଶର ରାଜଧାନୀ କୁଣ୍ଡିନପୁରରେ ରହିଲେ । ତାପରେ ଭୀମଙ୍କ ଠାରୁ ଅନୁମତି ନେଇ ପତ୍ନୀ ଦମୟନ୍ତୀଙ୍କ ସହିତ ନିଜ ରାଜଧାନୀକୁ ଫେରିଗଲେ । ରାଜା ନଳ ନିଜ ରାଜ୍ୟରେ ଧର୍ମ ଅନୁସାରେ ପ୍ରଜାପାଳନ କଲେ । ତାଙ୍କର ଉତ୍ତମ ଶାସନ ହେତୁ ତାଙ୍କର 'ରାଜା' ନାମ ଯଥାର୍ଥରେ ସାର୍ଥକ ହୋଇଥିଲା । ସେ ଅଶ୍ୱମେଧ ଆଦି ବହୁତ ଯଜ୍ଞ କଲେ । ସମୟକ୍ରମେ ଦମୟନ୍ତୀଙ୍କ ଗର୍ଭରୁ ଇନ୍ଦ୍ରସେନ ନାମକ ପୁତ୍ର ଓ ଇନ୍ଦ୍ରସେନା ନାମ୍ନୀ କନ୍ୟା ଜନ୍ମ ନେଲେ ।



## କଳିଯୁଗର ଦୁଷ୍ଟଭାବ, ଜୁଆଖେଳରେ ନଳଙ୍କର ପରାଜୟ ଏବଂ ନଗରରୁ ନିର୍ବାସନ

ମହର୍ଷି ବୃହଦଶ୍ୱ କହିଲେ—ଯୁଧିଷ୍ଠିର! ଯେଉଁ ସମୟରେ ଇନ୍ଦ୍ର ଆଦି ଦେବତାମାନେ ସ୍ୱୟଂବରରୁ ଫେରି ନିଜ ନିଜ ଲୋକକୁ ପ୍ରସ୍ଥାନ

କରୁଥିଲେ, ସେହି ସମୟରେ ତାଙ୍କର କଳିଯୁଗ ଏବଂ ଦ୍ୱାପର ଯୁଗ ସହିତ ଭେଟ ହୋଇଗଲା। ଇନ୍ଦ୍ର ପଚ୍ଚାରିଲେ, "ଆହେ କଳିଯୁଗ! କୁଆଡ଼େ ଯାଉଛ?" କଳିଯୁଗ କହିଲା, "ମୁଁ ଦମୟନ୍ତୀର ସ୍ୱୟଂବରରେ ତାକୁ ବିବାହ କରିବାକୁ ଯାଉଛି।" ଇନ୍ଦ୍ର ହସି ହସି ସେମାନଙ୍କୁ କହିଲେ— "ସେଠାକାର ସ୍ୱୟଂବର ତ କେତେବେଳୁ ସରିଗଲାଣି! ଦମୟନ୍ତୀ ରାଜା ନଳଙ୍କୁ ବରଣ କଲେ। ଆମ୍ଭେମାନେ ଭକୁଆଙ୍କ ପରି ରହିଗଲୁ।" କଳିଯୁଗ କ୍ରୋଧିତ ହୋଇ କହିଲା , "ଆଚ୍ଛା, ଇଏ ତ ବଡ଼ ଅନର୍ଥ ହୋଇଗଲା। ଦେବତାମାନଙ୍କୁ ଉପେକ୍ଷା କରି ସେ ମନୁଷ୍ୟକୁ ବରଣ କଲା! ତେଣୁ ତାକୁ ଦଣ୍ଡ ଦେବା ଉଚିତ।" ଦେବତାମାନେ କହିଲେ, "ଦମୟନ୍ତୀ ଆମର ଆଜ୍ଞା ପାଇ ନଳଙ୍କୁ ବରଣ କଲା। ବାସ୍ତବରେ ସର୍ବଗୁଣ ସମ୍ପନ୍ନ ନଳ ତା ପାଇଁ ଉପଯୁକ୍ତ ଅଟନ୍ତି। ସେ ସମସ୍ତ ଧର୍ମ ଜାଣିଛନ୍ତି ଓ ସଦାଚ୍ଚାରୀ ଅଟନ୍ତି। ସେ ଇତିହାସ-ପୁରାଣ ସହିତ ବେଦ ମଧ୍ୟ ଅଧ୍ୟୟନ କରିଛନ୍ତି। ସେ ଧର୍ମାନୁସାରେ ଯଜ୍ଞରେ ଦେବତାମାନଙ୍କୁ ତୃପ୍ତ କରନ୍ତି। କେତେବେଳେ ବି କାହାକୁ ହଇରାଣ କରନ୍ତି ନାହିଁ। ସତ୍ୟନିଷ୍ଠ ନଳ ଦୃଢ଼ ମନୋବଳଯୁକ୍ତ ଅଟନ୍ତି। ତାଙ୍କର ଚତୁରତା, ଧୈର୍ଯ୍ୟ, ଜ୍ଞାନ, ତପସ୍ୟା, ପବିତ୍ରତା, ରାଜନୀତି ଏବଂ ଶାସନ ଦେବତାମାନଙ୍କ ସମାନ ଅଟେ। ତାଙ୍କୁ ଶାପ ଦେବାଟା ପୂତିଗନ୍ଧମୟ ନରକରେ ପଡ଼ିବା ସହିତ ସମାନ।" ଏହା କହି ଦେବତାମାନେ ଚ୍ଚାଲିଗଲେ*।

କଳିଯୁଗ ଦ୍ୱାପରକୁ କହିଲା, "ଭାଇ ! ମୁଁ ମୋର କ୍ରୋଧକୁ ଶାନ୍ତ କରି ପାରୁ ନାହିଁ। ଏଣୁ ମୁଁ ନଳର ଶରୀରରେ ନିବାସ କରିବି। ମୁଁ ତାକୁ ରାଜ୍ୟଚ୍ୟୁତ କରିଦେବି। ସେ ଦମୟନ୍ତୀ ସହିତ ରହି ପାରିବ ନାହିଁ। ତେଣୁ ତୁମେ ମଧ୍ୟ ପଶାକାଠିରେ ପ୍ରବେଶ କରି ମୋତେ ଜୁଆଖେଳ ବେଳେ ସାହାଯ୍ୟ କର।" ଦ୍ୱାପର ତାର କଥାକୁ ସ୍ୱୀକାର କଲା। ଦ୍ୱାପର ଏବଂ କଳିଯୁଗ ଦୁଇଜଣ ନଳଙ୍କର କୌଣସି ଦୋଷ ଦେଖିବା ପାଇଁ

* ଏବଂଗୁଣଂ ନଳଂ ଯୋ ବୈ କାମୟେଚ୍ଛପିତୁଂ କଲେ।
କୃଚ୍ଛ୍ରେ ସ ନରେକେ ମଜ୍ଜେଦଗାଧେ ବିପୁଳେ ହ୍ରଦେ।
ଏବମୁକ୍ତ୍ୱା କଳିଂ ଦେବା ଦ୍ୱାପରଂ ଚ ଦିବଂ ଯଯୁଃ॥
(ମହାଭା. ବନ.୫୮।୧୨)

ବାରବର୍ଷ ପର୍ଯ୍ୟନ୍ତ ତାଙ୍କ ରାଜଧାନୀରେ ପ୍ରତୀକ୍ଷା କରି ରହିଲେ। ଦିନେ ରାଜା ନଳ ପରିସ୍ରା ଯିବା ପରେ ପାଦ ନ ଧୋଇ ସନ୍ଧ୍ୟା ସମୟରେ ବିନା ସଂକୋଚରେ ସନ୍ଧ୍ୟା-ବନ୍ଦନା କରିବାକୁ ବସିଗଲେ। ଏପରି ଅପବିତ୍ର ଅବସ୍ଥା ଦେଖି କଳିଯୁଗ ତାଙ୍କ ଶରୀରରେ ପ୍ରବେଶ କରିଗଲା*। ଏହା ପରେ ଅନ୍ୟ ଏକ ରୂପ ଧାରଣ କରି ସେ ନଳଙ୍କ ଭାଇ ପୁଷ୍କର ପାଖକୁ ଯାଇ କହିଲା, "ତୁମେ ନଳଙ୍କ ସହିତ ଜୁଆ ଖେଳ ଏବଂ ମୋର ସହାୟତାରେ ଜୁଆରେ ରାଜା ନଳଙ୍କୁ ହରାଇ ତାଙ୍କଠାରୁ ନିଷଧ ରାଜ୍ୟ ଛଡ଼ାଇ ଆଣ।" ପୁଷ୍କର କଳିଯୁଗ କଥା ମାନି ନଳଙ୍କ ପାଖକୁ ଗଲା। ଦ୍ୱାପର ମଧ୍ୟ ପଶାରୂପ ଧାରଣ କରି ସେମାନଙ୍କ ସାଥୀ ହୋଇଗଲା। ଯେତେବେଳେ ପୁଷ୍କର ରାଜା ନଳଙ୍କୁ ଜୁଆ ଖେଳିବା ପାଇଁ ଆହ୍ୱାନ କଲା, ସେତେବେଳେ ରାଜା ନଳ ଦମୟନ୍ତୀଙ୍କ ଆଗରେ ନିଜ ଭାଇର ଏଭଳି ବାରମ୍ବାର ଆହ୍ୱାନକୁ ସହି ପାରିଲେ ନାହିଁ। ସେ ପଶା ଖେଳିବା ପାଇଁ ସ୍ଥିର କରିନେଲେ। ସେତେବେଳେ ନଳଙ୍କ ଶରୀରରେ କଳି ପ୍ରବେଶ କରି ସାରିଥିଲା। ତେଣୁ ରାଜା ନଳ ସୁନା, ରୂପା, ରଥ, ବାହନ ଆଦି ଯାହାକିଛି ବାଜି ଲଗାଉ ଥିଲେ, ସେସବୁ ହାରି ଯାଉଥିଲେ। ପ୍ରଜାଗଣ ଏବଂ ମନ୍ତ୍ରୀମାନେ ବଡ଼ ବ୍ୟାକୁଳତାର ସହିତ ଏକତ୍ରିତ ହୋଇ ରାଜା ନଳଙ୍କ ଜୁଆଖେଳ ବନ୍ଦ କରିବା ପାଇଁ ଗ୍ରହିଁଲେ ଏବଂ ଆସି ଫାଟକ ପାଖରେ ଛିଡ଼ା ହୋଇଗଲେ। ସେମାନଙ୍କ ଅଭିପ୍ରାୟ ଜାଣିପାରି ଦ୍ୱାରପାଳ ରାଣୀ ଦମୟନ୍ତୀଙ୍କ ପାଖକୁ ଯାଇ କହିଲା, "ଆପଣ ମହାରାଜାଙ୍କୁ ଅନ୍ତତଃ ଏତିକି ନିବେଦନ କରନ୍ତୁ ଯେ—ଆପଣ ଧର୍ମ ଏବଂ ଅର୍ଥର ତତ୍ତ୍ୱ ଜାଣନ୍ତି। ଆପଣଙ୍କର ସମସ୍ତ ପ୍ରଜା ଆପଣଙ୍କ ଦୁଃଖ ସହି ନ ପାରି ଫାଟକ ପାଖରେ ଛିଡ଼ା ହୋଇଛନ୍ତି।" ଦମୟନ୍ତୀ ନିଜେ ଦୁଃଖରେ ମ୍ରିୟମାଣ

---

* ସ ନିତ୍ୟମନ୍ତରପ୍ରେପ୍ସୁର୍ନିଷଧେଷ୍ୱବସଚ୍ଚିରମ୍।
ଅଥାସ୍ୟ ଦ୍ୱାଦଶେ ବର୍ଷେ ଦଦର୍ଶ କଳିରନ୍ତରମ୍॥
କୃତ୍ୱା ମୂତ୍ରମୁପସ୍ପୃଶ୍ୟ ସଂଧ୍ୟାମନ୍ୱାସ୍ତ ନୈଷଧଃ।
ଅକୃତ୍ୱା ପାଦୟୋଃ ଶୌଚଂ ତତ୍ରୈନଂ କଳିରାବିଶତ୍॥
(ମହାଭା. ବନ. ୫୯।୨, ୩)

ହୋଇ ଅଚେତ ପରି ହୋଇଯାଇଥିଲେ । ସେ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ଶୋକାକୁଳ କଣ୍ଠରେ ମହାରାଜାଙ୍କୁ ନିବେଦନ କଲେ, "ସ୍ୱାମୀ ! ନଗରର ରାଜଭକ୍ତ ପ୍ରଜା ଏବଂ ମନ୍ତ୍ରୀମାନେ ଆପଣଙ୍କୁ ଦେଖା କରିବା ପାଇଁ ଆସିଛନ୍ତି ଓ ମୁଖ୍ୟଦ୍ୱାର ପାଖରେ ଠିଆ ହୋଇଛନ୍ତି । ଆପଣ ସେମାନଙ୍କ ସହ ଟିକେ ଦେଖା କରନ୍ତୁ ।" କିନ୍ତୁ ନଳ କଳିଯୁଗ ଦ୍ୱାରା ପ୍ରଭାବିତ ହୋଇ କିଛି କହିଲେ ନାହିଁ । ମନ୍ତ୍ରୀମଣ୍ଡଳୀ ଏବଂ ପ୍ରଜାଗଣ ଶୋକାକୁଳ ହୋଇ ଫେରିଗଲେ । ପୁଷ୍କର ଏବଂ ନଳଙ୍କର କେତେମାସ ପର୍ଯ୍ୟନ୍ତ ଜୁଆଖେଳ ଚାଲିଲା; ରାଜା ନଳ ବାରମ୍ବାର ହାରିଲେ । ନଳ ରାଜା ଜୁଆରେ ଯେଉଁ ପଶା ପକାନ୍ତି, ପଶା ସବୁବେଳେ ତାଙ୍କର ପ୍ରତିକୂଳରେ ପଡ଼େ । ସମସ୍ତ ଧନ ସେ ହରାଇଲେ । ଦମୟନ୍ତୀ ଏ ବିଷୟରେ ଜାଣିବାକୁ ପାଇଲେ । ସେ ବୃହତ୍ସେନା ନାମକ ଧାଈ ଦ୍ୱାରା ରାଜା ନଳଙ୍କର ସାରଥି ବାର୍ଷ୍ଣେୟଙ୍କୁ ଡକାଇ କହିଲେ—"ସାରଥି ! ତୁମେ ରାଜାଙ୍କର ପ୍ରିୟପାତ୍ର । ବର୍ତ୍ତମାନ ଏକଥା ତୁମକୁ ଅଛପା ନାହିଁ ଯେ ମହାରାଜା ବଡ଼ ସଂକଟରେ ପଡ଼ିଯାଇଛନ୍ତି । ତେଣୁ ତୁମେ ଘୋଡ଼ାକୁ ରଥରେ ଯୋଚି ମୋର ପିଲା ଦୁଇଟିଙ୍କୁ ବସାଇ କୁଣ୍ଡିନପୁରକୁ ନେଇଯାଅ । ତୁମେ ରଥ ଏବଂ ଘୋଡ଼ାଙ୍କୁ ମଧ୍ୟ ସେଠାରେ ଛାଡ଼ିଦେବ । ଯଦି ତୁମର ଇଚ୍ଛା ହୁଏ, ତୁମେ ବି ସେଠାରେ ରହିପାର; ନଚେତ୍ ଅନ୍ୟ କେଉଁଠିକି ଚାଲିଯିବ ।" ସାରଥି ଦମୟନ୍ତୀଙ୍କ କହିବା ଅନୁସାରେ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ପିଲାମାନଙ୍କୁ କୁଣ୍ଡିନପୁରରେ ପହଞ୍ଚାଇ ଦେଲେ । ରଥ ଏବଂ ଘୋଡ଼ା ସେଠାରେ ଛାଡ଼ିଦେଇ ସେ ନିଜେ ସେଠାରୁ ଚାଲି ଚାଲି ଯାଇ ଅଯୋଧ୍ୟାରେ ପହଞ୍ଚିଲେ ଏବଂ ସେଠାରେ ରାଜା ଋତୁପର୍ଣ୍ଣଙ୍କ ପାଖରେ ସାରଥି ହୋଇ ରହିଲେ ।

ବାର୍ଷ୍ଣେୟ ସାରଥି ଚାଲିଯିବା ପରେ ପୁଷ୍କର ପଶା ଖେଳରେ ରାଜା ନଳଙ୍କର ରାଜ୍ୟ ଏବଂ ସମସ୍ତ ଧନ ନେଇଗଲେ । ସେ ନଳଙ୍କୁ ସମ୍ବୋଧନ କରି ହସି ହସି କହିଲେ—"ଆଉ ଜୁଆ ଖେଳିବ? କିନ୍ତୁ ତୁମ ପାଖରେ ବାଜି ଲଗାଇବା ପାଇଁ କିଛି ତ ନାହିଁ ! ଯଦି ତୁମେ ଦମୟନ୍ତୀଙ୍କୁ ବାଜି ଲଗାଇବା ପାଇଁ ଯୋଗ୍ୟ ବିବେଚନା କରୁଛ, ତାହେଲେ ଖେଳ ।" ନଳଙ୍କର ହୃଦୟ ଫାଟିଗଲା ଭଳି ଲାଗିଲା । ସେ ପୁଷ୍କରକୁ କିଛି କହି

ପାରିଲେ ନାହିଁ । ସେ ନିଜ ଶରୀରରୁ ସମସ୍ତ ବସ୍ତ୍ର ଆଭୂଷଣ ଓହ୍ଲାଇଦେଇ ଗୋଟିଏ ମାତ୍ର ବସ୍ତ୍ର ପିନ୍ଧି ନଗରରୁ ବାହାରିଗଲେ । ଦମୟନ୍ତୀ ମଧ୍ୟ କେବଳ ଖଣ୍ଡିଏ ଶାଢ଼ୀ ପିନ୍ଧି ସ୍ୱାମୀଙ୍କର ଅନୁଗମନ କଲେ । ନଳଙ୍କର ମିତ୍ର ଏବଂ ସମ୍ପର୍କୀୟମାନଙ୍କୁ ବଡ଼ ଦୁଃଖ ଲାଗିଲା । ନଳ ଓ ଦମୟନ୍ତୀ ନଗର ବାହାରେ ରହି ତିନିରାତି କଟାଇଲେ । ପୁଷ୍କର ଧେଣ୍ଡୁରା ପିଟି ଘୋଷଣା କରିଦେଲେ ଯେ, ଯିଏ ନଳଙ୍କ ପ୍ରତି ସହାନୁଭୂତି ଦେଖାଇବ, ତାକୁ ଫାଶିଦଣ୍ଡ ମିଳିବ । ଭୟରେ ନଗରର ଲୋକମାନେ ନିଜର ରାଜା ନଳଙ୍କର ସେବା କରି ପାରିଲେ ନାହିଁ । ରାଜା ନଳ ତିନିଦିନ ତିନିରାତି ଆପଣା ନଗର ବାହାରେ କେବଳ ପାଣି ପିଇ ରହିଲେ । ଚତୁର୍ଥ ଦିନ ତାଙ୍କୁ ଭାରି ଭୋକ ଲାଗିଲା । ସେ ଦୁହେଁ ଫଳମୂଳ ଖାଇ ଆଗକୁ ଗ୍ଲିଲେ । ଦିନେ ନଳ ଦେଖିଲେ, ଦଳେ ପକ୍ଷୀ ତାଙ୍କ ପାଖରେ ବସିଛନ୍ତି । ସେମାନଙ୍କ ପର ସୁନା ପରି ଝଟକୁଛି । ନଳ ଭାବିଲେ, ଏମାନଙ୍କ ପାଖରୁ କିଛି ଧନ ମିଳିଯିବ । ଏହା ଭାବି ସେମାନଙ୍କୁ ଧରିବା ପାଇଁ ନଳ ସେମାନଙ୍କ ଉପରେ ନିଜର ପିନ୍ଧା ବସ୍ତ୍ର ପକାଇଦେଲେ । ପକ୍ଷୀମାନେ ତାଙ୍କର ବସ୍ତ୍ର ନେଇ ଉଡ଼ି ପଳାଇଗଲେ । ଏଥର ନଳ ଉଲଗ୍ନ ହୋଇଗଲେ । ସେ ଦୀନଦରିଦ୍ର ଭଳି ମୁହଁ ତଳକୁ କରି ଛିଡ଼ା ହୋଇ ରହିଗଲେ । ପକ୍ଷୀମାନେ କହିଲେ— "ନିର୍ବୋଧ ! ତୁ ନଗରରୁ ଗୋଟିଏ ବସ୍ତ୍ର ପିନ୍ଧି ଗ୍ଲି ଆସିଥିଲୁ ନା? ତାହା ଦେଖି ଆମକୁ ଭାରି ଦୁଃଖ ଲାଗିଥିଲା । ଏବେ ଆମେ ତୋ ବସ୍ତ୍ର ବି ନେଇଯାଉଛୁ । ଆମେ ପକ୍ଷୀ ନୋହୁଁ, ଆମେ ହେଉଛୁ ଜୁଆର ପଶା ।" ଏହା ପରେ ନଳ ଆସି ଦମୟନ୍ତୀଙ୍କୁ ପଶାମାନଙ୍କର କଥା କହିଲେ ।

ଏ ଘଟଣା ପରେ ନଳ କହିଲେ, "ପ୍ରିୟେ! ତୁମେ ତ ଦେଖୁଛ, ଏଠାରୁ ଅନେକ ବାଟ ପଡ଼ିଛି । ଗୋଟିଏ ଅବନ୍ତୀ ଆଡ଼କୁ ଯାଇଛି । ଅନ୍ୟଟି ଋକ୍ଷବାନ୍ ପର୍ବତ ଦେଇ ଦକ୍ଷିଣ ଦେଶକୁ ଯାଇଛି । ଆଗରେ ବିନ୍ଧ୍ୟାଚଳ ପର୍ବତ । ଏହି ପୟୋଷ୍ଣୀ ନଦୀଟି ଯାଇ ସମୁଦ୍ରରେ ପଡ଼ିଛି । ଏଗୁଡ଼ିକ ମହର୍ଷିମାନଙ୍କର ଆଶ୍ରମ । ଆଗ ରାସ୍ତାଟି ବିଦର୍ଭ ଦେଶକୁ ଯାଇଛି । ଏହା କୋଶଳ ଦେଶର ରାସ୍ତା ।" ଏହିରୂପେ ରାଜା ନଳ ଦୁଃଖ ଓ ଶୋକରେ ବି ଧୈର୍ଯ୍ୟପୂର୍ବକ ଦମୟନ୍ତୀଙ୍କୁ ଭିନ୍ନ ଭିନ୍ନ ମାର୍ଗ ଏବଂ ଆଶ୍ରମର

ପରିଚୟ ଦେଲେ । ଦମୟନ୍ତୀଙ୍କ ଆଖି ଅଶ୍ରୁଳ ହୋଇଗଲା । ସେ ଗଦ୍‌ଗଦ ସ୍ୱରରେ କହିଲେ,"ଆପଣ କ'ଣ ଭାବୁଛନ୍ତି ? ମୋର ଅଙ୍ଗ ଶିଥିଳ ହୋଇଯାଉଛି ଓ ମୋର ହୃଦୟ ଉଦ୍‌ବିଗ୍ନ ହୋଇଯାଉଛି । ଆପଣଙ୍କ ରାଜ୍ୟ ଗଲା, ଧନ ଗଲା; ଆପଣଙ୍କ ଦେହର ବସ୍ତ୍ର ଖଣ୍ଡିକ ମଧ୍ୟ ରହିଲା ନାହିଁ । ଆପଣ କ୍ଷୁଧା ଓ ତୃଷାରେ କଷ୍ଟ ପାଉଛନ୍ତି । ଏ ଅବସ୍ଥାରେ ଆପଣଙ୍କୁ ଏକୁଟିଆ ଏହି ନିର୍ଜନ ବନରେ ଛାଡ଼ିଦେଇ ମୁଁ କଣ କେଉଁଠାକୁ ଯାଇପାରିବି ? ମୁଁ ଆପଣଙ୍କ ସଙ୍ଗରେ ରହି ଆପଣଙ୍କ ଦୁଃଖ ଦୂର କରିବି । ଦୁଃଖ ସମୟରେ ସ୍ୱାମୀ ପାଇଁ ସ୍ତ୍ରୀ ଔଷଧ ପରି । ସେ ଧୈର୍ଯ୍ୟ ଦେଇ ସ୍ୱାମୀର ଦୁଃଖ ଦୂର କରେ । ଏ କଥାକୁ ବୈଦ୍ୟ ମଧ୍ୟ ସ୍ୱୀକାର କରନ୍ତି ।" ନଳ କହିଲେ, "ପ୍ରିୟେ ! ତୁମେ ଠିକ୍ କଥା କହିଛ । ପତ୍ନୀ ହେଉଛି ମିତ୍ର, ପତ୍ନୀ ହିଁ ଔଷଧ । କିନ୍ତୁ ମୁଁ ତ ତୁମକୁ ପରିତ୍ୟାଗ କରିବାକୁ ଚାହୁଁନାହିଁ, ତୁମେ ଏଭଳି ସନ୍ଦେହ କାହିଁକି କରୁଛ?" ଦମୟନ୍ତୀ କହିଲେ, "ଆପଣ ମୋତେ ଛାଡ଼ିବାକୁ ଯଦି ଚାହାନ୍ତି ନାହିଁ, ତେବେ ବିଦର୍ଭ ଦେଶର ରାସ୍ତା କାହିଁକି ଦେଖାଇ ଦେଉଛନ୍ତି ? ମୁଁ ନିଃସନ୍ଦେହ ଯେ ଆପଣ ମୋତେ ପରିତ୍ୟାଗ କରି ପାରିବେ ନାହିଁ । ତଥାପି ଏ ସମୟରେ ଆପଣଙ୍କ ମନ ବିପରୀତଗାମୀ ହୋଇଯାଇଛି । ଏଣୁ ଏପରି ଆଶଙ୍କା କରୁଛି । ଆପଣ ବାଟ ବତାଇ ଦେବାରୁ ମୋ ମନରେ ଦୁଃଖ ହେଉଛି । ଯଦି ମୋତେ ମୋ ବାପଘରକୁ କିଂବା ଅନ୍ୟ କୌଣସି ସମ୍ପର୍କୀୟଙ୍କ ଘରକୁ ପଠାଇବାକୁ ଚାହୁଁଥାନ୍ତି, ତାହେଲେ ଚାଲନ୍ତୁ, ଆମେ ଦୁଇଜଣ ସାଥୀ ହୋଇ ଯିବା । ମୋର ପିତା ଆପଣଙ୍କୁ ସସମ୍ମାନ ସତ୍କାର କରିବେ । ସେଠାରେ ଆପଣ ସୁଖରେ ରହିବେ ।" ନଳ କହିଲେ, "ପ୍ରିୟେ ! ତୁମ ପିତା ଜଣେ ରାଜା ଏବଂ ମୁଁ ମଧ୍ୟ ରାଜା ଥିଲି । ଏ ସମୟରେ ସଂକଟରେ ପଡ଼ି ମୁଁ ତାଙ୍କ ପାଖକୁ ଯିବି ନାହିଁ ।" ଏହିପରି ନଳ ଦମୟନ୍ତୀଙ୍କୁ ବୁଝାଇଲେ । ଏହା ପରେ ଦୁହେଁ ଗୋଟିଏ ବସ୍ତ୍ରରେ ଶରୀରକୁ ଆବୃତ କରି ବନରେ ଏଣେ ତେଣେ ବୁଲିଲେ । ଭୋକଶୋଷରେ ବ୍ୟାକୁଳ ହୋଇ ଦୁହେଁ ଗୋଟିଏ ଧର୍ମଶାଳାରେ ଆସି ରହିଲେ ।

✦✦✦

## ଦମୟନ୍ତୀଙ୍କୁ ଛାଡ଼ି ନଳଙ୍କର ଅନ୍ୟତ୍ର ଗମନ, ସଂକଟରୁ ଉଦ୍ଧାର ପାଇବା ପରେ ଦମୟନ୍ତୀ ଦିବ୍ୟ ଋଷିଙ୍କ ଦର୍ଶନ ପାଇବା ଏବଂ ରାଜା ସୁବାହୁଙ୍କ ମହଲରେ ନିବାସ କରିବା

ବୃହଦଶ୍ୱ କହିଲେ—ଯୁଧିଷ୍ଠିର ! ଏହି ସମୟରେ ରାଜା ନଳଙ୍କ ଦେହରେ ବସ୍ତ୍ର ନ ଥାଏ। ଅଧିକ ବା କଣ କହିବି, ତଳେ ପାରି ବସିବା ପାଇଁ ପଟେଇ ଖଣ୍ଡେ ବି ନ ଥାଏ। ଦେହ ଧୂଳି ଧୂସରିତ ହୋଇଯାଇଥାଏ। ତା'ସାଙ୍ଗକୁ ଭୋକ ଓ ଶୋଷର ଦାଉ ମଧ୍ୟ କିଛି କମ୍ ନ ଥିଲା। ରାଜା ନଳ ଭୂମି ଉପରେ ଶୋଇଗଲେ। ଦମୟନ୍ତୀଙ୍କ ଜୀବନରେ ମଧ୍ୟ କେବେ ଏପରି ପରିସ୍ଥିତି ଆସି ନ ଥିଲା। ସୁକୁମାରୀ ଦମୟନ୍ତୀ ମଧ୍ୟ ସେଇଠାରେ ଶୋଇଗଲେ। ଦମୟନ୍ତୀ ସିନା ନିଦରେ ଶୋଇଗଲେ, କିନ୍ତୁ ଅତ୍ୟଧିକ ଦୁଃଖ ହେତୁ ନଳଙ୍କୁ ନିଦ୍ରା ଆସିଲା ନାହିଁ। ତାଙ୍କ ଆଖି ଆଗରେ ରାଜ୍ୟ ହରାଇବାର ଦୃଶ୍ୟ, ବନ୍ଧୁବାନ୍ଧବଙ୍କ ବିଚ୍ଛେଦ ଏବଂ ପକ୍ଷୀମାନେ ବସ୍ତ୍ର ନେଇ ଉଡ଼ିଯିବାର ଦୃଶ୍ୟ ଗୋଟି ଗୋଟି ହୋଇ ଭାସିବାକୁ ଲାଗିଲା। ସେ ଭାବିଲେ, ‘‘ଦମୟନ୍ତୀ ମୋତେ ବହୁତ ଭଲ ପାଉଛି। ଏହି ଭଲ ପାଇବା ଯୋଗୁଁ ହିଁ ସେ ଏତେ ଦୁଃଖକଷ୍ଟ ଭୋଗୁଛି। ଯଦି ମୁଁ ତାକୁ ଛାଡ଼ି ଚାଲିଯିବି, ସେ ତା ବାପଘରକୁ ଚାଲିଯିବ। ସେଠାରେ ସମ୍ଭବତଃ ତାକୁ ସୁଖ ମିଳିପାରେ। ମୋ ସଙ୍ଗରେ ରହିଲେ ଅଯଥା ଦୁଃଖ ଭୋଗିବାକୁ ପଡ଼ିବ।’’ ଶେଷରେ ନଳ ସ୍ଥିର କଲେ ଯେ ଦମୟନ୍ତୀକୁ ଛାଡ଼ି ଚାଲିଯିବା ହିଁ ଠିକ୍ ହେବ। ଦମୟନ୍ତୀ ହେଉଛି ଏକନିଷ୍ଠ ପତିବ୍ରତା। କେହି ତାର ସତୀତ୍ୱ ଭଙ୍ଗ କରି ପାରିବେ ନାହିଁ।* ଏହିପରି ନିର୍ଣ୍ଣୟ କରି ଏବଂ ଦମୟନ୍ତୀଙ୍କ ସତୀତ୍ୱରେ ନିଶ୍ଚିନ୍ତ ହୋଇ ରାଜା ନଳ ଭାବିଲେ ‘‘ମୁଁ ତ ଲଙ୍ଗଳା; କେବଳ ଦମୟନ୍ତୀ ଦେହରେ ମାତ୍ର ଖଣ୍ଡିଏ ବସ୍ତ୍ର ଅଛି। ତଥାପି ସେହି ବସ୍ତ୍ରରୁ ଅଧା ଚିରି ନେବା ଠିକ୍ ହେବ। କିନ୍ତୁ ଚିରିବି କିପରି? ହୁଏତ ସେ ଉଠିପଡ଼ିବ।’’

---

*** ନ ଚୈଷା ତେଜସା ଶକ୍ୟା କୈଶ୍ଚିଦ୍ ଧର୍ଷୟିତୁଂ ପଥି।**
**ଯଶସ୍ୱିନୀ ମହାଭାଗା ମଦ୍ଭକ୍ତେୟଂ ପତିବ୍ରତା॥**

(ମହାଭା. ବନ. ୬୨।୧୪)

ଏପରି ଭାବି ସେ ଧର୍ମଶାଳାରେ ଏଣେତେଣେ ବୁଲୁ ବୁଲୁ ଗୋଟିଏ କୋଷମୁକ୍ତ ତରବାରି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା। ନଳ ତାକୁ ଉଠାଇନେଲେ ଏବଂ ଧୀରେ ଧୀରେ ଦମୟନ୍ତୀଙ୍କର ଅଧା ବସ୍ତ୍ର କାଟି ନିଜ ଶରୀରକୁ ଆବୃତ କଲେ। ଦମୟନ୍ତୀ ନିଦ୍ରିତ ଥିବାବେଳେ ନଳ ତାଙ୍କୁ ଛାଡ଼ିଦେଇ ଚାଲିଗଲେ। କିଛି କ୍ଷଣ ପରେ ତାଙ୍କର ହୃଦୟ ଟିକିଏ ଶାନ୍ତ ହେଲାରୁ ସେ ପୁଣି ଧର୍ମଶାଳାକୁ ଫେରି ଆସିଲେ ଏବଂ ଦମୟନ୍ତୀଙ୍କ ଆଡ଼କୁ ଚାହିଁ କାନ୍ଦିବାକୁ ଲାଗିଲେ। ସେ ଭାବିଲେ, "ଏପର୍ଯ୍ୟନ୍ତ ମୋ ପ୍ରାଣପ୍ରିୟା ଅନ୍ତଃପୁରରେ ପରଦା ଆଢୁଆଳରେ ରହୁଥିଲା। ଏହାକୁ କେହି ଛୁଇଁ ମଧ୍ୟ ପାରୁ ନ ଥିଲେ। ଆହାଃ! ଆଜି ସେ ଅନାଥିନୀ ପରି ଅଧା ବସ୍ତ୍ର ପିନ୍ଧି ତଳେ ଶୋଇରହିଛି! ଏବେ ସେ ମୋ ବିନା ଦୁଃଖରେ ମ୍ରିୟମାଣ ହୋଇ ବନରେ କେମିତି ବୁଲିବ? ପ୍ରିୟା! ତୁ ହେଉଛୁ ଧର୍ମାତ୍ମା। ତେଣୁ ଆଦିତ୍ୟ, ବସୁ, ରୁଦ୍ର, ଅଶ୍ୱିନୀକୁମାର ଏବଂ ପବନ ଦେବତା ତୋତେ ରକ୍ଷା କରନ୍ତୁ।" ଏପରି କହିବାବେଳେ ରାଜା ନଳଙ୍କ ହୃଦୟ ଦୁଃଖରେ ଫାଟିଯାଉଥିଲା। ସେ ଦୋଳି ପରି ବାରମ୍ବାର ଧର୍ମଶାଳାରୁ ବାହାରକୁ ଯାଉଥାନ୍ତି ଏବଂ ପୁଣି ଲେଉଟି ଆସୁଥାନ୍ତି। ତାଙ୍କ ଦେହରେ କଳିଯୁଗ ପ୍ରବେଶ କରିଥିବା ହେତୁ ତାଙ୍କ ବୁଦ୍ଧି ଭ୍ରମିତ ହୋଇଯାଇଥାଏ, ତେଣୁ ସେ ଦମୟନ୍ତୀଙ୍କୁ ଏକୁଟିଆ ଛାଡ଼ିଦେଇ ସେଠାରୁ ଚାଲିଗଲେ।

ଦମୟନ୍ତୀଙ୍କର ନିଦ ଭାଙ୍ଗିଲା ପରେ ସେ ଦେଖିଲେ ଯେ ରାଜା ନଳ ସେଠାରେ ନାହାନ୍ତି। ସେ ଭୟରେ ଡାକିବାକୁ ଲାଗିଲେ, "ସ୍ୱାମୀ ! ମହାରାଜ ! ହେ ମୋର ସର୍ବସ୍ୱ ! ଆପଣ କେଉଁଠି ଅଛନ୍ତି? ମୋତେ ଏକୁଟିଆ ଡର ମାଡୁଛି। ଆପଣ କୁଆଡ଼େ ଗଲେ? ଆଉ ଅଧିକ ମଜା କରନ୍ତୁ ନାହିଁ। ଏତେ ନିଷ୍ଠୁର ହୁଅନ୍ତୁ ନାହିଁ। ମୋତେ କାହିଁକି ଡରାଉଛନ୍ତି? ଶୀଘ୍ର ଦେଖା ଦିଅନ୍ତୁ। ମୁଁ ଆପଣଙ୍କୁ ଖୋଜୁଛି। ହଁ, ହଁ, ଦେଖି ଦେଲି। ନୀରବରେ ଲତା ଉହାଡ଼ରେ ଲୁଚି ରହିଛନ୍ତି କାହିଁକି? ମୁଁ ଦୁଃଖରେ ପଡ଼ି ଏତେ ବିଳାପ କରୁଛି, କିନ୍ତୁ ଆପଣ ମୋ ପାଖକୁ ଆସି ସାନ୍ତ୍ୱନା ମଧ୍ୟ ଦେଉ ନାହାନ୍ତି? ସ୍ୱାମୀ ! ମୋ ମନରେ ମୋ ପାଇଁ କିଂବା ଆଉ କାହାରି ପାଇଁ ଦୁଃଖ ନାହିଁ। ମୋର କେବଳ ଏତିକି ଚିନ୍ତା ଯେ ଆପଣ ଏହି ଘୋର

ଜଙ୍ଗଲରେ ଏକୁଟିଆ କେମିତି ରହିବେ? ହେ ପ୍ରାଣନାଥ ! ଆପଣଙ୍କ ଭଳି ନିର୍ମଳଚିତ୍ତ ଲୋକର ଏପରି ଦଶା ଯିଏ କଲା, ସେ ଆପଣଙ୍କ ଠାରୁ ଅଧିକ ଦୁର୍ଦ୍ଦଶା ଭୋଗି ସର୍ବଦା ଦୁଃଖରେ ଜୀବନ ବିତାଇବ* ।'' ଦମୟନ୍ତୀ ଏହିପରି ବିଳାପ କରି ଏଣେତେଣେ ଦୌଡ଼ିବାକୁ ଲାଗିଲେ । ସେ ପାଗଳିନୀ ଭଳି ଏଣେତେଣେ ବୁଲୁ ବୁଲୁ ଗୋଟିଏ ଅଜଗର ପାଖରେ ଯାଇ ପହଞ୍ଚିଗଲେ । ଦୁଃଖାଭିଭୂତ ହୋଇପଡ଼ିଥିବାରୁ ଅଜଗରକୁ ଦେଖିପାରିଲେ ନାହିଁ । ଅଜଗର ଦମୟନ୍ତୀଙ୍କୁ ଗିଳିବାକୁ ଲାଗିଲା । ସେ ସମୟରେ ମଧ୍ୟ ଦମୟନ୍ତୀ ନିଜ ଚିନ୍ତା ନ କରି ରାଜା ନଳଙ୍କ କଥା ହିଁ ଚିନ୍ତା କରୁଥିଲେ । ସେ ଭାବୁଥିଲେ, ସେ ଏକୁଟିଆ କେମିତି ରହିବେ । ତା'ପରେ ପୁଣି ସେ ଡାକିବାକୁ ଲାଗିଲେ, ''ସ୍ୱାମୀ ! ମୋତେ ଅନାଥିନୀଙ୍କ ଭଳି ଏଠାରେ ଅଜଗର ଗିଳୁଛି; ଆପଣ ମୋତେ ଛଡ଼ାଇବାକୁ ଆସୁନାହାନ୍ତି କାହିଁକି?'' ଦମୟନ୍ତୀଙ୍କ ଡାକ ଏକ ବ୍ୟାଧ କାନରେ ପଡ଼ିଲା । ସେ ସେହିଠାରେ ବୁଲୁଥିଲା । ସେ ଦୌଡ଼ି ଆସି ଦେଖିଲା ଯେ ଦମୟନ୍ତୀଙ୍କୁ ଅଜଗର ଗିଳିଦେଉଛି; ତେଣୁ ସେ ତା'ର ତୀକ୍ଷ୍ଣ ଶସ୍ତ୍ରରେ ଅଜଗରର ପାଟି ଚିରିଦେଇ ଦମୟନ୍ତୀଙ୍କୁ ଉଦ୍ଧାର କରିଆଣିଲା ଏବଂ ଦମୟନ୍ତୀ ଗାଧୋଇ ପାଧୋଇ ପରିଷ୍କୃତ ହେଲେ । ଏହା ପରେ ବ୍ୟାଧ ତାଙ୍କୁ ବୁଝାଇସୁଝାଇ ଖାଇବାକୁ ଦେଲା । ଦମୟନ୍ତୀ ଟିକିଏ ଆଶ୍ୱସ୍ତ ହେଲେ । ଏହା ପରେ ବ୍ୟାଧ ପଚ୍ଋିଲା—''ସୁନ୍ଦରି ! ତୁମେ କିଏ? କେଉଁ କଷ୍ଟରେ ପଡ଼ି ବା କେଉଁ ଉଦ୍ଦେଶ୍ୟରେ ତୁମେ ଏଠାକୁ ଆସିଛ?'' ଦମୟନ୍ତୀ ବ୍ୟାଧକୁ ନିଜର ଦୁଃଖ କାହାଣୀ କହିଲେ । ଦମୟନ୍ତୀଙ୍କର ମନୋହାରିଣୀ ରୂପସୌନ୍ଦର୍ଯ୍ୟ

* ନ ଶୋଚ୍ୟାମ୍ୟହମାତ୍ମାନଂ ନ ଚ୍ୟାନ୍ୟଦପି କିଂଚନ ।
କଥଂ ନୁ ଭବିତାସ୍ୟେକ ଇତି ତ୍ୱାଂ ନୃପ ଶୋଚିମି ॥
ଯସ୍ୟାଭିଶାପାଦ୍ ଦୁଃଖାର୍ତ୍ତୋ ଦୁଃଖଂ ବିନ୍ଦତି ନୈଷଧଃ ।
ତସ୍ୟ ଭୂତସ୍ୟ ନୋ ଦୁଃଖାଦ୍ ଦୁଃଖମପ୍ୟଧିକଂ ଭବେତ୍ ॥
ଅପାପଚେତସଂ ପାପୋ ଯ ଏବଂ କୃତବାନ୍ ନଳମ୍ ।
ତସ୍ମାଦ୍ ଦୁଃଖତରଂ ପ୍ରାପ୍ୟ ଜୀବତ୍ୱସୁଖଜୀବିକାମ୍ ॥
(ମହାଭା. ବନ. ୬୩ । ୧୧, ୧୬, ୧୭)

ଏବଂ ଗ୍ଲିଚଳନ ଦେଖି ବ୍ୟାଧ କାମମୋହିତ ହୋଇଗଲା । ସେ ମିଠା ମିଠା କଥା କହି ଦମୟନ୍ତୀଙ୍କୁ ନିଜ ପ୍ରତି ଆକୃଷ୍ଟ କରିବାକୁ ଚେଷ୍ଟା କଲା । ଦମୟନ୍ତୀ ଦୁରାଗ୍ରହୀ ବ୍ୟାଧର ମନ କଥା ଜାଣିପାରି କ୍ରୋଧରେ ପ୍ରଜ୍ୱଳିତ ହୋଇଉଠିଲେ । ଦମୟନ୍ତୀ ବ୍ୟାଧର ବଳାତ୍କାର ପ୍ରଚେଷ୍ଟାକୁ ରୋକିବା ପାଇଁ ବହୁ ଚେଷ୍ଟା କଲେ; କିନ୍ତୁ ଯେତେବେଳେ ସେ କୌଣସି ପ୍ରକାରେ ନ ମାନିଲା, ସେତେବେଳେ ସେ ଅଭିଶାପ ଦେଇ କହିଲେ—"ଯଦି ମୁଁ ନିଷଧନରେଶ ନଳଙ୍କ ଛଡ଼ା ଅନ୍ୟ କୌଣସି ପୁରୁଷକୁ ମନରେ ମଧ୍ୟ ଚିନ୍ତା କରି ନ ଥିବି, ତାହେଲେ ଏ ପାପିଷ୍ଠ ନୀଚ ବ୍ୟାଧ ଏହିକ୍ଷଣି ମରି ଧରାଶାୟୀ ହୋଇଯାଉ* ।" ଦମୟନ୍ତୀଙ୍କ ମୁହଁରୁ ଏତିକି ବାହାରିବା ମାତ୍ରେ ବ୍ୟାଧର ପ୍ରାଣବାୟୁ ଉଡ଼ିଗଲା । ସେ ପୋଡ଼ା ଖୁଣ୍ଟ ଭଳି ଢଳି ପଡ଼ିଲା ।

ବ୍ୟାଧ ମରିଯିବା ପରେ ଦମୟନ୍ତୀ ରଜା ନଳଙ୍କୁ ଖୋଜି ଖୋଜି ଯାଇ ଗୋଟିଏ ନିର୍ଜନ ଭୟଙ୍କର ଜଙ୍ଗଲରେ ପହଞ୍ଚିଗଲେ । ସେ ବିରହ-ଦୁଃଖରେ ଉନ୍ମାଦିନୀ ପରି ହୋଇ ଅନେକ ପର୍ବତ, ନଦନଦୀ, ଜଙ୍ଗଲ, ହିଂସ୍ରଜନ୍ତୁ ପିଶାଚ ଆଦିଙ୍କୁ ଦେଖି ରାଜା ନଳ କେଉଁଆଡ଼େ ଗଲେ ବୋଲି ପଗ୍ଚରୁଥାନ୍ତି । ଏହିରୂପେ ଉତ୍ତର ଦିଗ ଅଭିମୁଖେ ଯାଉ ଯାଉ ତିନିଦିନ ତିନିରାତି ବିତିଗଲା । ଗ୍ଲୁ ଗ୍ଲୁ ସେ ଦେଖିଲେ, ଆଗରେ ଏକ ସୁନ୍ଦର ତପୋବନରେ ଆଶ୍ରମଟିଏ ଅଛି । ଆଶ୍ରମରେ ବଶିଷ୍ଠ, ଭୃଗୁ ଓ ଅତ୍ରିଙ୍କ ପରି ମିତଭୋଜୀ, ସଂଯମୀ, ପବିତ୍ର, ଜିତେନ୍ଦ୍ରିୟ ଓ ତପୋନିଷ୍ଠ ଋଷି ନିବାସ କରୁଛନ୍ତି । ସେମାନେ ବୃକ୍ଷର ବକଳ ଅଥବା ମୃଗଛାଲ ପରିଧାନ କରିଛନ୍ତି । ଦମୟନ୍ତୀଙ୍କୁ ଟିକିଏ ଆଶ୍ୱସ୍ତି ମିଳିଲା । ସେ ଆଶ୍ରମକୁ ଯାଇ ଋଷିମାନଙ୍କୁ ବିନମ୍ର ଭାବରେ ପ୍ରଣାମ କରିସାରି ହାତ ଯୋଡ଼ି ଠିଆ ହେଲେ । ଋଷିମାନେ ତାଙ୍କୁ ସ୍ୱାଗତ ଜଣାଇ ସତ୍କାର କରିବା ପରେ କହିଲେ, "ଆମେ ତୁମର କି ସେବା କରିପାରିବୁ କୁହ ।" ଦମୟନ୍ତୀ ଭଦ୍ରମହିଳାଙ୍କ ଭଳି ପଗ୍ଚରିଲେ, "ଆପଣମାନଙ୍କ ତପସ୍ୟା, ଯଜ୍ଞ, ଧର୍ମ

---

* ଯଦ୍ୟହଂ ନୈଷଧାଦନ୍ୟଂ ମନସାପି ନ ଚିନ୍ତୟେ ।
ତଥାୟଂ ପତତାଂ କ୍ଷୁଦ୍ରୋ ପରାସୁର୍ମୃଗଜୀବନଃ ॥
(ମହାଭା. ବନ. ୬୩ । ୩୮)

ଏବଂ ପଶୁପକ୍ଷୀ ସବୁକିଛି କୁଶଳ ତ? ଆପଣଙ୍କ ଧର୍ମାଚରଣରେ କୌଣସି ବିଘ୍ନ ଘଟୁନାହିଁ ତ?'' ଋଷିମାନେ କହିଲେ, ''କଲ୍ୟାଣି ! ଆମେ ସବୁଦୃଷ୍ଟିରୁ କୁଶଳରେ ଅଛୁ। କିନ୍ତୁ ତୁମେ କିଏ ଏବଂ କେଉଁ ଉଦ୍ଦେଶ୍ୟରେ ଏଠାକୁ ଆସିଛ? ତୁମେ କଣ ଏ ବନ, ପର୍ବତ ଓ ନଦୀର ଅଧିଷ୍ଠାତ୍ରୀ ଦେବୀ?'' ଦମୟନ୍ତୀ କହିଲେ, ''ମୁଁ କୌଣସି ଦେବୀ ନୁହେଁ। ମୁଁ ଜଣେ ମାନବୀ। ମୁଁ ହେଉଛି ବିଦର୍ଭରାଜା ଭୀମଙ୍କର କନ୍ୟା ଏବଂ ପରମ ବୁଦ୍ଧିମାନ୍, ଯଶସ୍ୱୀ ତଥା ବୀରବିଜୟୀ ନିଷଧନରେଶ ମହାରାଜ ନଳ ମୋର ସ୍ୱାମୀ। କପଟଦ୍ୟୂତରେ ପାରଙ୍ଗମ ଦୁରାତ୍ମାପୁରୁଷମାନେ ମୋର ସ୍ୱାମୀଙ୍କୁ ଜୁଆ ଖେଳିବାକୁ ପ୍ରୋତ୍ସାହିତ କରି ତାଙ୍କର ରାଜ୍ୟ ଏବଂ ସମସ୍ତ ଧନସମ୍ପତ୍ତି ନେଇଗଲେ। ମୁଁ ତାଙ୍କରି ସ୍ତ୍ରୀ ଦମୟନ୍ତୀ। ମୋ ଦୁର୍ଭାଗ୍ୟକୁ ସେ କେଉଁଆଡ଼େ ଚାଲିଯାଇଛନ୍ତି। ମୁଁ ଏବେ ସେହି ଯୋଦ୍ଧା, ଶସ୍ତ୍ରବିଦ୍ୟାରେ ପାରଙ୍ଗମ ତଥା ମହାତ୍ମା ସ୍ୱାମୀଙ୍କୁ ଖୋଜିବା ପାଇଁ ବନ ବନ ବୁଲୁଛି। ମୁଁ ଯଦି ଶୀଘ୍ର ତାଙ୍କର ଦେଖା ନ ପାଇବି, ତାହେଲେ ବଞ୍ଚିପାରିବି ନାହିଁ। ତାଙ୍କ ବିନା ମୋ ଜୀବନ ନିଷ୍ଫଳ। ବିଚ୍ଛେଦ ଦୁଃଖ ଆଉ ମୁଁ କେତେ ଦିନ ସହିପାରିବି?'' ତପସ୍ୱୀମାନେ କହିଲେ, ''କଲ୍ୟାଣି! ଆମେ ଆମର ତପସିଦ୍ଧ ଦୃଷ୍ଟିରେ ଦେଖିପାରୁଛୁ ଯେ ତୁମେ ଭବିଷ୍ୟତରେ ବହୁତ ସୁଖ ପାଇବ ଏବଂ କିଛି ଦିନ ଭିତରେ ରାଜା ନଳଙ୍କର ଦର୍ଶନ ପାଇବ*। ଧର୍ମାତ୍ମା ନିଷଧନରେଶ ଅଳ୍ପ ଦିନ ଭିତରେ ସମସ୍ତ ଦୁଃଖରୁ ମୁକ୍ତ ହୋଇ ସୁସମୃଦ୍ଧ ନିଷଧ ଦେଶରେ ରାଜୁତି କରିବେ। ତାଙ୍କର ଶତ୍ରୁମାନେ ଭୟଭୀତ ହେବେ, ମିତ୍ରମାନେ ସୁଖୀ ହେବେ ଏବଂ କୁଟୁମ୍ବମାନେ ତାଙ୍କୁ ପାଇ ଆନନ୍ଦିତ ହେବେ।'' ଏପରି କହି ସେହି ତପସ୍ୱୀମାନେ ସେମାନଙ୍କର ଆଶ୍ରମ ସହିତ କେଉଁ ଆଡ଼େ ଅଦୃଶ୍ୟ ହୋଇଗଲେ। ଏପରି ଆଶ୍ଚର୍ଯ୍ୟଜନକ ଘଟଣା ଦେଖି ଦମୟନ୍ତୀ ବିସ୍ମିତ ହୋଇଗଲେ। ସେ ଭାବିଲେ, ''ମୁଁ କଣ ଏଠାରେ ସ୍ୱପ୍ନ ଦେଖୁଥିଲି? ଏଠାରେ ଏ କି ଘଟଣା ଘଟିଗଲା? ସେହି

---

*** ଉଦର୍କସ୍ତବ କଲ୍ୟାଣି କଲ୍ୟାଣୋ ଭବିତା ଶୁଭେ।**
**ବୟଂ ପଶ୍ୟାମ ତପସା କ୍ଷିପ୍ରଂ ଦ୍ରକ୍ଷ୍ୟସି ନୈଷଧମ୍॥**

(ମହାଭା. ବନ. ୬୪।୯୨)

ତପସ୍ୱୀ, ଆଶ୍ରମ, ପୁଣ୍ୟସଲିଳା ନଦୀ, ଫୁଲଫଳରେ ଭରା ସବୁଜ ବୃକ୍ଷ ସବୁ କୁଆଡ଼େ ଗଲେ?'' ଦମୟନ୍ତୀ ପୁଣି ଦୁଃଖିତ ହୋଇ ପଡ଼ିଲେ। ତାଙ୍କର ମୁଖ ମଉଳି ଗଲା।

ସେଠାରୁ ସେ କାନ୍ଦି କାନ୍ଦି ଯାଇ ଗୋଟିଏ ଅଶୋକ ବୃକ୍ଷ ପାଖରେ ପହଞ୍ଚିଲେ। ତାଙ୍କ ଆଖିରୁ ଧାର ଧାର ଅଶ୍ରୁ ବହିଯାଉଥିଲା। ସେ ଅଶୋକ ବୃକ୍ଷକୁ ଗଦ୍‌ଗଦ କଣ୍ଠରେ କହିଲେ, ''ହେ ଅଶୋକ ! ତୁ ମୋର ଦୁଃଖ ଦୂର କରିଦେ। ତୁ କଣ କେଉଁଠି ନଳ ରାଜାଙ୍କୁ ଶୋକଶୂନ୍ୟ ଅବସ୍ଥାରେ ଦେଖିଛୁ? ଅଶୋକ! ତୁ ତୋର ଶୋକନାଶନ ନାମକୁ ସାର୍ଥକ କର।'' ଦମୟନ୍ତୀ ଏହା କହି ଅଶୋକ ବୃକ୍ଷକୁ ପ୍ରଦକ୍ଷିଣା କରି ଆଗକୁ ଚାଲିଲେ। ଭୟଙ୍କର ଜଙ୍ଗଲରେ ଅନେକ ବୃକ୍ଷ, ଗୁମ୍ଫା, ପର୍ବତଶିଖର ଏବଂ ନଦୀର ଆଖପାଖରେ ନିଜର ପତିଦେବଙ୍କୁ ଖୋଜୁ ଖୋଜୁ ବହୁତ ଦୂର ଚାଲିଗଲେ। ସେଠାରେ ସେ ଦେଖିଲେ, ଅନେକ ହାତୀ, ଘୋଡ଼ା ଏବଂ ରଥ ନେଇ ଦଳେ ବେପାରୀ ଯାଉଛନ୍ତି। ସେ ବେପାରୀମାନଙ୍କ ମୁଖିଆ ସହ କଥାବାର୍ତ୍ତା କରି ଜାଣିଲେ ଯେ ବେପାରୀମାନେ ରାଜା ସୁବାହୁଙ୍କ ରାଜ୍ୟ ଚେଦିଦେଶକୁ ଯାଉଛନ୍ତି। ଦମୟନ୍ତୀ ସେମାନଙ୍କ ସାଥିରେ ଚାଲିଲେ। ତାଙ୍କ ମନରେ ନଳଙ୍କୁ ଭେଟିବାର ଇଚ୍ଛା ପ୍ରବଳରୁ ପ୍ରବଳତର ହେଉଥିଲା। କିଛି ଦିନ ବାଟ ଚାଲି ଚାଲି ସେହି ବେପାରୀମାନେ ଏକ ଭୟଙ୍କର ଜଙ୍ଗଲରେ ଯାଇ ପହଞ୍ଚିଲେ। ସେଠାରେ ଅତି ସୁନ୍ଦର ସରୋବରଟିଏ ଥିଲା। ଦୀର୍ଘ ପଥ ଯାତ୍ରା ଯୋଗୁଁ ସବୁ ଲୋକ ଥକି ପଡ଼ିଥିଲେ। ତେଣୁ ସେହି ଲୋକମାନେ ସେଠାରେ ତମ୍ବୁ ଟାଣି ରହିଲେ। ବେପାରୀମାନଙ୍କର ସେଦିନ ବଡ଼ ଦୁର୍ଯୋଗ ଥିଲା। ରାତିରେ ଜଙ୍ଗଲୀ ହାତୀମାନେ ସେମାନଙ୍କ ହାତୀଙ୍କୁ ଆକ୍ରମଣ କଲେ ଏବଂ ସେମାନଙ୍କ ଧାଁଦଉଡ଼ରେ ବେପାରୀମାନେ ସବୁ ନଷ୍ଟଭ୍ରଷ୍ଟ ହୋଇଗଲେ। କୋଳାହଳ ଶୁଣି ଦମୟନ୍ତୀଙ୍କର ନିଦ ଭାଙ୍ଗିଗଲା। ସେଠାରେ ଏପରି ମହାସଂହାର ଦୃଶ୍ୟ ଦେଖି ସେ ପାଗଳିନୀ ପରି ହୋଇଗଲେ। ସେ କେବେ ବି ଏଭଳି ଘଟଣା ଦେଖି ନ ଥିଲେ। ସେ ଭୟରେ ସେଠାରୁ ପଳାଇଗଲେ ଏବଂ ଯେଉଁଠି କିଛି ଲୋକ ରକ୍ଷା ପାଇ ଏକାଠି ଛିଡ଼ା ହୋଇଥିଲେ, ସେଠାରେ ପହଞ୍ଚିଲେ। ତାପରେ ଉକ୍ତ ମହାସଂହାରରୁ ରକ୍ଷା

ପାଇଯାଇଥିବା ସେହି ବେଦଜ୍ଞ ଓ ସଂଯମୀ ବ୍ରାହ୍ମଣମାନଙ୍କ ସାଥିରେ ସେ ଶରୀରରେ ଅଧାବସ୍ତ୍ର ପିନ୍ଧି ଚାଲିଲେ ଏବଂ ସନ୍ଧ୍ୟାବେଳକୁ ଚେଦିରାଜା ସୁବାହୁଙ୍କ ରାଜଧାନୀରେ ପହଞ୍ଚିଗଲେ।

ରାଜଧାନୀର ରାଜପଥରେ ଦମୟନ୍ତୀ ଚାଲୁଥିଲା ବେଳେ ଲୋକମାନେ ତାଙ୍କୁ ପାଗଳିନୀ ବୋଲି ଭାବୁଥିଲେ। ଛୋଟ ପିଲାମାନେ ତାଙ୍କ ପଛରେ ଗୋଡ଼ାଇଲେ। ଶେଷରେ ସେ ଯାଇ ରାଜମହଲ ପାଖରେ ପହଞ୍ଚିଲେ। ସେତେବେଳେ ରାଜମାତା ରାଜପ୍ରାସାଦର ଝରକା ପାଖରେ ବସିଥିଲେ। ପିଲାମାନେ ଏପରି ଦମୟନ୍ତୀଙ୍କୁ ଘେରିଥିବା ଦେଖି ସେ ଗୋଟିଏ ଧାଈକୁ କହିଲେ, ‘‘ଆରେ, ଯାଇ ଦେଖିଲୁ। ସେ ସ୍ତ୍ରୀଲୋକଟି ବଡ଼ ଦୁଃଖିନୀ ପରି ଜଣାପଡୁଛି। ବୋଧହୁଏ, ନିଜ ପାଇଁ କେଉଁଠି ଆଶ୍ରୟ ଖୋଜୁଛି। ପିଲାମାନେ ତାକୁ ଭାରି ହଇରାଣ କରୁଛନ୍ତି। ତୁ ତାକୁ ମୋ ପାଖକୁ ନେଇଆ’। ସେ ଏତେ ସୁନ୍ଦରୀ ଯେ ମୋ ମହଲକୁ ଶୋଭାମୟ କରିଦେବ।’’ ଧାଈ ଦମୟନ୍ତୀଙ୍କୁ ନେଇ ଆସିଲା। ରାଜମାତା ଦମୟନ୍ତୀଙ୍କ ଶରୀରର ସୌନ୍ଦର୍ଯ୍ୟ ଦେଖି ପଚାରିଲେ, ‘‘ଦେଖିବାକୁ ତ ତୁମେ ଦୁଃଖିନୀ ଜଣାପଡୁଛ, ତଥାପି ତୁମ ଦେହ ଏତେ ଉଜ୍ଜ୍ୱଳ ଦିଶୁଛି କେମିତି? ତୁମେ କିଏ? କାହାର ପତ୍ନୀ? ଏତେ ଅସହାୟ ଅବସ୍ଥାରେ ବି କାହାରିକୁ ଡରୁ ନାହଁ କେମିତି?’’ ଦମୟନ୍ତୀ କହିଲେ, ‘‘ମୁଁ ଜଣେ ପତିବ୍ରତା ନାରୀ। ଉଚ୍ଚକୁଳରେ ଜନ୍ମ ହୋଇଛି, କିନ୍ତୁ ଦାସୀର କାର୍ଯ୍ୟ କରୁଛି। ଅନ୍ତଃପୁରରେ ରହିଆସିଛି। ମୁଁ ଯେକୌଣସି ସ୍ଥାନରେ ରହିଯାଏ ଏବଂ ଫଳମୂଳ ଖାଇ ଦିନ ବିତାଇଦିଏ। ମୋର ସ୍ୱାମୀ ବହୁତ ଗୁଣବାନ୍ ଏବଂ ସେ ମୋତେ ବହୁତ ଭଲ ପାଆନ୍ତି। ବିନା ଅପରାଧରେ ସେ ଦିନେ ରାତିରେ ମୁଁ ଶୋଇଥିବା ବେଳେ ମୋତେ ଛାଡ଼ି କେଉଁଆଡ଼େ ଚାଲିଗଲେ। ମୁଁ ଅଭାଗିନୀ ରାତିଦିନ ମୋର ସେହି ପ୍ରାଣନାଥଙ୍କୁ ଖୋଜୁଛି ଏବଂ ତାଙ୍କରି ବିରହରେ କଷ୍ଟ ପାଉଛି।’’ ଏତିକି କହୁ କହୁ ତାଙ୍କ ଆଖି ଅଶ୍ରୁ ଛଳଛଳ ହୋଇଗଲା। ସେ କାନ୍ଦି ପକାଇଲେ। ତାଙ୍କ ବିଳାପ ଦେଖି ରାଜମାତାଙ୍କ ହୃଦୟ ତରଳିଗଲା। ସେ କହିଲେ, ‘‘ତୁମକୁ ଦେଖି ମୋ ମନରେ କାହିଁକି କେଜାଣି ସ୍ୱାଭାବିକରୂପେ ସ୍ନେହ ଜାତ ହେଉଛି। ତୁମେ ମୋ ପାଖରେ ରୁହ। ମୁଁ ତୁମ ସ୍ୱାମୀଙ୍କୁ ଖୋଜିବାର

ବ୍ୟବସ୍ଥା କରିବି । ସେ ଆସିଲେ ତୁମେ ତାଙ୍କ ସହିତ ଦେଖା କରିବ ।" ଦମୟନ୍ତୀ କହିଲେ, "ରାଜମାତା ! ମୁଁ ଗୋଟିଏ ସର୍ତ୍ତରେ ଆପଣଙ୍କ ଭବନରେ ରହିବି । ମୁଁ କେବେ ଅଇଁଠା ଖାଇବି ନାହିଁ, କାହାରି ପାଦ ଧୋଇଦେବି ନାହିଁ ଏବଂ ପରପୁରୁଷ ସଙ୍ଗେ କଥାବାର୍ତ୍ତା କରିବି ନାହିଁ । ଯଦି କୌଣସି ପୁରୁଷଲୋକ ମୋ ସଙ୍ଗେ ଖରାପ ବ୍ୟବହାର କରେ, ତେବେ ତାକୁ ଦଣ୍ଡ ଦେବାକୁ ହେବ । ସେ ଯଦି ବାରମ୍ବାର ସେହିପରି କରେ, ତେବେ ତାକୁ ପ୍ରାଣଦଣ୍ଡ ମଧ୍ୟ ଦେବାକୁ ହେବ । ମୁଁ ମୋର ସ୍ୱାମୀଙ୍କୁ ଖୋଜିବା ଉଦ୍ଦେଶ୍ୟରେ କେବଳ ବ୍ରାହ୍ମଣମାନଙ୍କ ସହ କଥାବାର୍ତ୍ତା କରିବି । ଆପଣ ଯଦି ମୋର ଏହି ସର୍ତ୍ତ ସ୍ୱୀକାର କରିବେ, ତେବେ ମୁଁ ଆପଣଙ୍କ ପାଖରେ ରହିବି* ।" ଦମୟନ୍ତୀଙ୍କର ସର୍ତ୍ତ ଶୁଣି ରାଜମାତା ବହୁତ ଖୁସୀ ହେଲେ ଏବଂ ସର୍ତ୍ତ ରକ୍ଷା କରିବାକୁ ପ୍ରତିଶ୍ରୁତି ଦେଲେ । ଏହା ପରେ ସେ ତାଙ୍କ ନିଜ ଝିଅ ସୁନନ୍ଦାକୁ ଡକାଇ କହିଲେ, "ଦେଖ୍ ଝିଅ, ଏ ଦାସୀକୁ ଦେବୀ ବୋଲି ଭାବିବୁ । ବୟସ ଦୃଷ୍ଟିରୁ ଏ ତୋର ସମସ୍କନ୍ଧ ହେବ । ତେଣୁ ଏହାକୁ ତୋର ସଖୀ ପରି ରାଜଭବନରେ ରଖ ଏବଂ ଏହାରି ସଙ୍ଗେ ହସଖେଳ ଓ ମନୋରଞ୍ଜନ କର ।" ସୁନନ୍ଦା ଆନନ୍ଦରେ ଦମୟନ୍ତୀଙ୍କୁ ନିଜ ମହଲକୁ ନେଇଗଲା । ଦମୟନ୍ତୀ ଆପଣା ସର୍ତ୍ତ ପାଳନପୂର୍ବକ ରାଜଉଆସରେ ରହିଲେ ।



## ନଳଙ୍କ ରୂପ ବଦଳ, ଋତୁପର୍ଣ୍ଣଙ୍କ ପାଖରେ ସାରଥି ହୋଇ ରହିବା, ନଳ-ଦମୟନ୍ତୀଙ୍କୁ ଖୋଜିବାକୁ ରାଜା ଭୀମଙ୍କ ପ୍ରୟାସ ଏବଂ ଦମୟନ୍ତୀଙ୍କୁ ପାଇବା

ବୃହଦଶ୍ୱ କହିଲେ—ହେ ଯୁଧିଷ୍ଠିର! ଯେଉଁ ସମୟରେ ରାଜା ନଳ ଦମୟନ୍ତୀଙ୍କୁ ଶୋଇଥିବା ଅବସ୍ଥାରେ ଛାଡ଼ି ପଳାଇଗଲେ, ସେତେବେଳେ ଜଙ୍ଗଲରେ ଦାବାଗ୍ନି ଲାଗିଥିଲା । ନଳ କିଛି ସମୟ ଅଟକିଗଲେ । ତାଙ୍କୁ

* ଉଚ୍ଛିଷ୍ଟଂ ନୈବ ଭୁଞ୍ଜୀୟାଂ ନ କୁର୍ଯ୍ୟାଂ ପାଦଧାବନମ୍ ।
ନ ଗୃହଂ ପୁରୁଷାନନ୍ୟାନ୍ ପ୍ରଭାଷେୟଂ କଥଞ୍ଚନ ॥

ହଠାତ୍ ଚିତ୍କାର ଶୁଭିଲା, ‘‘ନଳ! ଶୀଘ୍ର ଦୌଡ଼ି ଆସ। ମୋତେ ବଞ୍ଚାଅ।’’ ନଳ ‘‘ଭୟ କର ନାହିଁ, ଭୟ କର ନାହିଁ’’ କହି ଦୌଡ଼ି ଯାଇ ଦାବାଗ୍ନି ମଧ୍ୟକୁ ପଶିଗଲେ ଏବଂ ଦେଖିଲେ, ନାଗରାଜ କର୍କୋଟକ କୁଣ୍ଡଳୀ ବାନ୍ଧି ପଡ଼ିଛି। ସେ ହାତ ଯୋଡ଼ି ନଳଙ୍କୁ କହିଲା, ‘‘ରାଜନ୍! ମୁଁ ହେଉଛି କର୍କୋଟକ ସର୍ପ। ମୁଁ ତେଜସ୍ୱୀ ଋଷି ନାରଦଙ୍କୁ ପ୍ରତାରଣା କରି ଏ ଦଶା ଭୋଗୁଛି। ସେ ମୋତେ ଅଭିଶାପ ଦେଇଛନ୍ତି, ‘ଯେପର୍ଯ୍ୟନ୍ତ ରାଜା ନଳ ତୋତେ ନ ଉଠାଇବେ, ସେପର୍ଯ୍ୟନ୍ତ ତୁ ଏଠାରେ ଏପରି ପଡ଼ି ରହିବୁ। ସେ ଉଠାଇଲେ ଯାଇ ତୁ ଶାପମୁକ୍ତ ହେବୁ।’ ତାଙ୍କ ଅଭିଶାପ ହେତୁ ମୁଁ ଏଠାରୁ ପାଦେହେଲେ ଆଗକୁ ଯାଇପାରୁ ନାହିଁ। ତୁମେ ମୋତେ ଶାପମୁକ୍ତ କର। ମୁଁ ତୁମକୁ ତୁମର ହିତ ହେଲା ଭଳି କଥା କହିବି ଏବଂ ତୁମର ମିତ୍ର ହୋଇଯିବି। ମୋତେ ଓଜନିଆ ଦେଖି ଡର ନାହିଁ। ମୁଁ ବର୍ତ୍ତମାନ ହାଲୁକା ହୋଇଯାଉଛି।’’ ଏହା କହି ସେ ଗୋଟିଏ ଆଙ୍ଗୁଳି ଭଳି ହୋଇଗଲା। ନଳ ତାକୁ ଉଠାଇ ଦାବାନଳର ବାହାରକୁ ନେଇଆସିଲେ। କର୍କୋଟକ କହିଲା, ‘‘ମୋତେ ତଳେ ରଖ ନାହିଁ। ପାଦ ଗଣି ଗଣି କିଛି ବାଟ ଚାଲ। ନଳ ପାଦ ଗଣି ଗଣି ଦଶମ ପାଦ ପକାଇ ଯେତେବେଳେ ‘ଦଶ’ ବୋଲି କହିଲେ, ସେତେବେଳେ ହଠାତ୍ କର୍କୋଟକ ନାଗ ତାଙ୍କୁ ଦଂଶନ କରିଦେଲା। ତାର ନିୟମ ଥିଲା, କେହି ଯଦି ତାକୁ ‘ଦଶ’ ଅର୍ଥାତ୍ ‘ଦଂଶ’ ବୋଲି କହେ, ତେବେ ସେ ତାକୁ ଦଂଶନ କରେ, ଅନ୍ୟଥା ଦଂଶନ କରେ ନାହିଁ। କର୍କୋଟକର ଦଂଶନରେ ନଳଙ୍କର ରୂପ ବଦଳିଗଲା ଏବଂ କର୍କୋଟକ ତାର ନିଜର ପୂର୍ବରୂପ ଫେରିପାଇଲା। ନଳ ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେବାରୁ ସେ କହିଲା, ‘‘ରାଜା! ଏଣିକି ତୁମକୁ କେହି ଚିହ୍ନି ପାରିବେ ନାହିଁ। ଏଣୁ ମୁଁ ତୁମର ରୂପ ବଦଳାଇଦେଲି।

---

**ପ୍ରାର୍ଥୟେଦ୍ ଯଦି ମାଂ କଶ୍ଚିଦ୍ ଦଣ୍ଡ୍ୟସ୍ତେ ସ ପୁମାନ୍ ଭବେତ୍।**
**ବଧ୍ୟଶ୍ଚ ତେଽସକୃନ୍ମନ୍ଦ ଇତି ମେ ବ୍ରତମାହିତମ୍॥**
**ଭର୍ତ୍ତୁରନ୍ୱେଷଣାର୍ଥଂ ତୁ ପଶ୍ୟେୟଂ ବ୍ରାହ୍ମଣାନହମ୍।**
**ଯଦ୍ୟେବମିହ ବସ୍ତ୍ୟାମି ତ୍ୱତ୍ସକାଶେ ନ ସଂଶୟଃ॥**

(ମହାଭା. ବନ. ୬୫।୬୮-୭୦)

କଳିଯୁଗ ତୁମଠାରେ ପ୍ରବେଶ କରି ତୁମକୁ ବହୁତ ଦୁଃଖ ଦେଲାଣି। ଏବେ ମୋ ବିଷଜ୍ୱାଳାରେ ସେ ଭୀଷଣ କଷ୍ଟ ପାଇବ।* ତୁମେ ମୋତେ ରକ୍ଷା କଲ। ଏବେ ତୁମର ହିଂସ୍ର ପଶୁପକ୍ଷୀ, ଶତ୍ରୁ ଏବଂ ବ୍ରହ୍ମବେତ୍ତାମାନଙ୍କ ଅଭିଶାପକୁ ଆଉ ଭୟ ରହିବ ନାହିଁ। ତୁମ ଉପରେ ଆଉ କୌଣସି ବିଷର ପ୍ରଭାବ ପଡ଼ିବ ନାହିଁ ଏବଂ ଯୁଦ୍ଧରେ ତୁମର ସର୍ବଦା ବିଜୟ ହେବ।ψ ଏଣିକି ତୁମେ ତୁମର ନାମ 'ବାହୁକ' ରଖ ଏବଂ ଜୁଆଖେଳରେ ପ୍ରବୀଣ ରାଜା ଋତୁପର୍ଣ୍ଣଙ୍କର ଅଯୋଧ୍ୟା ନଗରୀକୁ ଯାଅ। ତୁମେ ତାଙ୍କୁ ଅଶ୍ୱଚାଳନା ସମ୍ବନ୍ଧୀୟ ବିଦ୍ୟା ଶିଖାଇଦେବ ଏବଂ ସେ ତୁମକୁ ଜୁଆଖେଳର ରହସ୍ୟସବୁ କହିଦେବେ ତଥା ତୁମର ମିତ୍ର ମଧ୍ୟ ହୋଇଯିବେ। ଦ୍ୟୂତକ୍ରୀଡ଼ାର ରହସ୍ୟ ଜାଣିଯିବା ପରେ ତୁମକୁ ତୁମର ପତ୍ନୀ, କନ୍ୟା, ପୁତ୍ର, ରାଜ୍ୟ ସବୁକିଛି ମିଳିଯିବ। ଯେତେବେଳେ ତୁମେ ତୁମର ପୂର୍ବରୂପ ଧାରଣ କରିବାକୁ ଚାହିଁବ, ସେତେବେଳେ ମୋତେ ସ୍ମରଣ କରିବ ଏବଂ ମୁଁ ଦେଉଥିବା ଏହି ବସ୍ତ୍ର ଧାରଣ କରିବ।'' ଏହା କହି କର୍କୋଟକ ନାଗ ଦୁଇଟି ଦିବ୍ୟ ବସ୍ତ୍ର ଦେଲା ଏବଂ ସେଠାରୁ ଅନ୍ତର୍ହିତ ହୋଇଗଲା।

ରାଜା ନଳ ସେଠାରୁ ଚାଲି ଚାଲି ଯାଇ ଦଶମ ଦିନରେ ରାଜା ଋତୁପର୍ଣ୍ଣଙ୍କର ରାଜଧାନୀ ଅଯୋଧ୍ୟାରେ ପହଞ୍ଚିଲେ। ସେ ସେଠାରେ ରାଜଦରବାରରେ ଏହିପରି ନିବେଦନ କଲେ ଯେ, ''ମୋ ନାମ ବାହୁକ। ମୁଁ ଅଶ୍ୱଚାଳନା କରେ ଏବଂ ସେମାନଙ୍କୁ ନାନା ପ୍ରକାର ଗତିରେ ଦୌଡ଼ିବା ଶିଖାଏ। ଏହି ସମୟରେ ପୃଥିବୀରେ ଅଶ୍ୱବିଦ୍ୟାରେ ମୋ ପରି ନିପୁଣ ଆଉ

---

* ଯତ୍କୃତେ ଚାସି ନିକୃତୋ ଦୁଃଖେନ ମହତା ନଳ।
ବିଷେଣ ସ ମଦୀୟେନ ତ୍ୱୟି ଦୁଃଖଂ ନିବତ୍ସ୍ୟତି॥
(ମହାଭା. ବନ. ୬୬।୧୫)

ψ ନ ତେ ଭୟଂ ନରବ୍ୟାଘ୍ର ଦଂଷ୍ଟ୍ରିଭ୍ୟଃ ଶତ୍ରୁତୋଽପି ବା।
ବ୍ରହ୍ମବିଦ୍‌ଭ୍ୟଶ୍ଚ ଭବିତା ମତ୍‌ପ୍ରସାଦାନ୍ନରାଧିପ॥
ରାଜନ୍ ବିଷନିମିତ୍ତା ଚ ନ ତେ ପୀଡ଼ା ଭବିଷ୍ୟତି।
ସଂଗ୍ରାମେଷୁ ଚ ରାଜେନ୍ଦ୍ର ଶଶ୍ୱଜ୍ଜୟମବାପ୍ସ୍ୟସି॥
(ମହାଭା. ବନ. ୬୬।୧୮, ୧୯)

କେହି ନାହାନ୍ତି । ଟଙ୍କାପଇସା ସମ୍ବନ୍ଧୀୟ ତଥା ଅନ୍ୟାନ୍ୟ ଗମ୍ଭୀର ସମସ୍ୟା ପାଇଁ ମଧ୍ୟ ମୁଁ ଉତ୍ତମ ପରାମର୍ଶ ଦେଇପାରିବି ଏବଂ ରୋଷେଇ କାର୍ଯ୍ୟରେ ମଧ୍ୟ ମୁଁ ଧୁରନ୍ଧର । ହସ୍ତକୌଶଳ ସମ୍ବନ୍ଧୀୟ ସମସ୍ତ କାମ ଏବଂ ଅନ୍ୟାନ୍ୟ କଠିନ କାମ କରିବା ପାଇଁ ମୁଁ ଚେଷ୍ଟା କରିବି । ଆପଣ ମୋର ପାରିଶ୍ରମିକ ନିର୍ଦ୍ଧାରିତ କରି ମୋତେ ରଖନ୍ତୁ ।'' ଋତୁପର୍ଣ୍ଣ କହିଲେ, ''ବାହୁକ! ତୁମେ ଆସିଲ ଭଲ ହେଲା । ତୁମ ଦାୟିତ୍ୱରେ ସବୁ କାମ ରହିବ । କିନ୍ତୁ ମୁଁ ବେଗଗାମୀ ଯାନକୁ ବେଶୀ ପସନ୍ଦ କରେ । ତେଣୁ ତୁମେ ଏମିତି ଚେଷ୍ଟା କର, ଯେମିତି ମୋ ଘୋଡ଼ାମାନଙ୍କର ବେଗ ସବୁଠୁ ଦ୍ରୁତତର ହେବ । ଆଜିଠୁ ମୁଁ ତୁମକୁ ଅଶ୍ୱଶାଳାର ଅଧ୍ୟକ୍ଷ କଲି । ତୁମକୁ ପ୍ରତିମାସରେ ଦଶ ହଜାର ସ୍ୱର୍ଣ୍ଣମୋହର ମିଳିବ । ଏହାବ୍ୟତୀତ ବାର୍ଷ୍ଣେୟ (ନଳଙ୍କର ପୁରୁଣା ସାରଥି) ଏବଂ ଜୀବଳ ସବୁବେଳେ ତୁମ ପାଖରେ ଉପସ୍ଥିତ ରହିବେ । ତୁମେ ଆନନ୍ଦରେ ମୋ ଦରବାରରେ ରୁହ ।'' ରାଜା ଋତୁପର୍ଣ୍ଣଙ୍କ ସତ୍କାର ପାଇ ରାଜା ନଳ ବାହୁକ ରୂପରେ  ବାର୍ଷ୍ଣେୟ ଏବଂ ଜୀବଳଙ୍କ ସାଥିରେ ଅଯୋଧ୍ୟାରେ ରହିଲେ । ନଳ ପ୍ରତିଦିନ ରାତିରେ ଦମୟନ୍ତୀଙ୍କୁ ସ୍ମରଣ କରି କହନ୍ତି, ''ହାୟ! ହାୟ! ତପସ୍ୱିନୀ ଦମୟନ୍ତୀ ଭୋକଶୋଷରେ ଥକିଯାଇ ଏ ମୂର୍ଖକୁ ସ୍ମରଣ କରୁଥିବ କିଂବା ଜାଣେନା କେଉଁଠାରେ ଶୋଇଥିବ ।'' ଏହିପରି ସେ ଅନେକ କଥା ଭାବନ୍ତି ଏବଂ ଋତୁପର୍ଣ୍ଣଙ୍କ ପାଖରେ ଏପରି ରହନ୍ତି, ଯେପରି କେହି ତାଙ୍କୁ କଦାପି ଚିହ୍ନି ନ ପାରିବେ ।

ତେଣେ ବିଦର୍ଭରାଜା ଭୀମ ଜାଣିବାକୁ ପାଇଲେ ଯେ ତାଙ୍କର ଜ୍ୱାଇଁ ନଳ ରାଜ୍ୟ ହରାଇ ତାଙ୍କର କନ୍ୟା ସହିତ ବନକୁ ଚାଲିଯାଇଛନ୍ତି । ତେଣୁ ସେ ବ୍ରାହ୍ମଣମାନଙ୍କୁ ଡକାଇ ସେମାନଙ୍କୁ ପ୍ରଚୁର ଧନ ଦେଇ କହିଲେ, ''ଆପଣମାନେ ପୃଥିବୀରେ ସର୍ବତ୍ର ଅନୁସନ୍ଧାନ କରି ନଳ-ଦମୟନ୍ତୀଙ୍କୁ ଖୋଜି ଆଣି ପହଞ୍ଚାନ୍ତୁ । ଯେଉଁ ବ୍ରାହ୍ମଣ ଏ କର୍ଯ୍ୟରେ ସଫଳ ହେବେ, ତାଙ୍କୁ ହଜାରେ ଗାଈ ଏବଂ ଜାଗିରି ମିଳିବ । ଯଦି ଆପଣମାନେ ତାଙ୍କୁ ଆଣି ନ ପାରି କେବଳ ସେମାନେ କେଉଁଠି ଅଛନ୍ତି, ତାହା ଜାଣି ଖବର ଦେବେ, ତେବେ ବି  ଦଶ ହଜାର ଗାଈ ଦିଆଯିବ ।'' ବ୍ରାହ୍ମଣମାନେ ଆନନ୍ଦ ମନରେ ନଳ-ଦମୟନ୍ତୀଙ୍କୁ ଖୋଜିବା ପାଇଁ ବାହାରି ପଡ଼ିଲେ ।

ସୁଦେବ ନାମକ ଜଣେ ବ୍ରାହ୍ମଣ ନଳ-ଦମୟନ୍ତୀଙ୍କୁ ଖୋଜିବା ପାଇଁ ଚେଦିରାଜାଙ୍କ ରାଜଧାନୀକୁ ଗଲେ । ସେ ଦିନେ ରାଜମହଲରେ ଦମୟନ୍ତୀଙ୍କୁ ଦେଖିଦେଲେ । ସେହି ସମୟରେ ରାଜାଙ୍କ ମହଲରେ ପୁଣ୍ୟାହବାଚନ ହେଉଥିଲା ଏବଂ ଦମୟନ୍ତୀ ତଥା ସୁନନ୍ଦା ଏକାଠି ବସି ଏହି ମଙ୍ଗଳକୃତ୍ୟ ଦେଖୁଥିଲେ । ସୁଦେବ ବ୍ରାହ୍ମଣ ଦମୟନ୍ତୀଙ୍କୁ ଦେଖି ଭାବିଲେ, ଏ ନିଶ୍ଚୟ ଭୀମନନ୍ଦିନୀ ଦମୟନ୍ତୀ । ମୁଁ ପ୍ରଥମରୁ ତାଙ୍କର ଯେମିତି ରୂପ ଦେଖିଥିଲି, ଏବେ ମଧ୍ୟ ସେହିପରି ଦେଖୁଛି । ବହୁତ ଭଲ ହେଲା । ଏହାଙ୍କୁ ଦେଖି ପାରିବାରୁ ମୋର ଯାତ୍ରା ସଫଳ ହୋଇଗଲା । ସୁଦେବ ଦମୟନ୍ତୀଙ୍କ ପାଖକୁ ଗଲେ ଏବଂ କହିଲେ, "ହେ ବିଦର୍ଭନନ୍ଦିନୀ! ମୁଁ ହେଉଛି ତୁମ ଭାଇଙ୍କର ମିତ୍ର ସୁଦେବ ବ୍ରାହ୍ମଣ । ଭୀମରାଜାଙ୍କ ଆଦେଶରେ ତୁମକୁ ଖୋଜିବା ପାଇଁ ଏଠାକୁ ଆସିଛି । ତୁମର ପିତାମାତା ଏବଂ ଭାଇ ଭଲରେ ଅଛନ୍ତି । ତୁମର ପିଲା ଦୁଇଟି ମଧ୍ୟ ବିଦର୍ଭଦେଶରେ କୁଶଳରେ ଅଛନ୍ତି । କିନ୍ତୁ ତୁମ ବିଚ୍ଛେଦରେ ସମଗ୍ର କୁଟୁମ୍ବ ପ୍ରାଣହୀନ ପରି ହୋଇଯାଇଛନ୍ତି ଏବଂ ତୁମକୁ ଖୋଜିବା ପାଇଁ ଶହ ଶହ ବ୍ରାହ୍ମଣ ସାରା ପୃଥିବୀରେ ବୁଲୁଛନ୍ତି ।" ଦମୟନ୍ତୀ ବ୍ରାହ୍ମଣଙ୍କୁ ଚିହ୍ନିଗଲେ । ସେ ଜଣ ଜଣ କରି ସମସ୍ତଙ୍କର କୁଶଳବାର୍ତ୍ତା ପଚାରିଲେ ଏବଂ ପଚାରୁ ପଚାରୁ କାନ୍ଦି ପକାଇଲେ । ଦମୟନ୍ତୀ ଏପରି କଥା କହୁ କହୁ କାନ୍ଦିବାର ଦେଖି ସୁନନ୍ଦା ଡରିଗଲେ ଏବଂ ତାଙ୍କ ମାଆଙ୍କ ପାଖକୁ ଯାଇ ସବୁ କଥା ଶୁଣାଇଲେ । ରାଜମାତା ସଙ୍ଗେ ସଙ୍ଗେ ଅନ୍ତଃପୁରରୁ ବାହାରି ବ୍ରାହ୍ମଣଙ୍କ ପାଖକୁ ଯାଇ ପଚାରିଲେ, "ବ୍ରାହ୍ମଣଦେବ! ଏ କାହାର ସ୍ତ୍ରୀ ଓ କାହାର କନ୍ୟା? ନିଜର ଘରଲୋକଙ୍କ ଠାରୁ କେମିତି ଅଲଗା ହୋଇଗଲା ? ତୁମେ ଏହାକୁ ଚିହ୍ନିଲ କିପରି?" ସୁଦେବ ନଳ-ଦମୟନ୍ତୀଙ୍କର ସାରା କାହାଣୀ ଶୁଣାଇଲେ ଏବଂ କହିଲେ, "ଯେପରି ଅଗ୍ନି ପାଉଁଶ ଭିତରେ ଦବି ରହିଥିବା କଥା ଗରମରୁ ଜଣା ପଡ଼ିଯାଏ, ମୁଁ ସେହିପରି ଏହି ଦେବୀଙ୍କର ସୁନ୍ଦର ରୂପ ଏବଂ କପାଳରୁ ଏହାଙ୍କୁ ଚହ୍ନିଗଲି ।" ସୁନନ୍ଦା ନିଜ ହାତରେ ଦମୟନ୍ତୀଙ୍କର କପାଳ ଧୋଇଦେଲେ, ଯଦ୍ଦ୍ୱାରା ତାଙ୍କ ଦୁଇଭ୍ରୁଲତାର ମଝିରେ ଥିବା ଲାଲ ଚିହ୍ନ

ଚନ୍ଦ୍ରମା ପରି ଉଜ୍ଜ୍ୱଳ ଦିଶିଲା । କପାଳରେ ସେହି ତିଳଚିହ୍ନ ଦେଖି ସୁନନ୍ଦା ଏବଂ ରାଜମାତା କାନ୍ଦି ପକାଇଲେ । ସେମାନେ ଦୁଇ ଘଡ଼ି ପର୍ଯ୍ୟନ୍ତ ଦମୟନ୍ତୀଙ୍କୁ ଛାତିରେ ଭିଡ଼ି ଧରିଲେ । ରାଜମାତା କହିଲେ, "ଦମୟନ୍ତୀ! ମୁଁ ଏହି ତିଳଚିହ୍ନରୁ ଚିହ୍ନିପାରୁଛି ଯେ ତୁ ମୋ ଭଉଣୀର କନ୍ୟା । ତୋ ମାଆ ମୋର ନିଜ ଭଉଣୀ । ଆମେ ଦୁହେଁ ଦଶାର୍ଣ୍ଣଦେଶର ରାଜା ସୁଦାମାଙ୍କର ଝିଅ । ତୋର ଜନ୍ମ ହୋଇଥିଲା ମୋ ବାପାଙ୍କ ଘରେ । ମୁଁ ସେହି ସମୟରେ ହିଁ ତୋତେ ଦେଖିଥିଲି । ଏ ଘର ତୋର ବାପଘର ପରି । ଏଠାକାର ସମ୍ପତ୍ତି ଯେପରି ମୋର, ସେହିପରି ତୋର ମଧ୍ୟ ।" ଏକଥା ଶୁଣି ଦମୟନ୍ତୀ ବହୁତ ଖୁସୀ ହେଲେ । ସେ ମାଉସୀଙ୍କୁ ପ୍ରଣାମ କରି କହିଲେ, "ମାଉସୀ ! ତୁମେ ମୋତେ ନ ଚିହ୍ନିଲ ତ କଣ ହେଲା, ମୁଁ ତ ଏଠି ତୁମ ନିଜ ଝିଅ ପରି ରହିଛି! ତୁମେ ମୋର ମନବାଞ୍ଛା ପୂରଣ କରିଛ ଏବଂ ମୋତେ ରକ୍ଷା କରିଛ । ଏଥିରେ ମୋର ସନ୍ଦେହ ନାହିଁ ଯେ ଏଣିକି ମୁଁ ଆହୁରି ଅଧିକ ଖୁସୀରେ ରହିବି । କିନ୍ତୁ ମୁଁ ବହୁତ ଦିନରୁ ଏଣେ ତେଣେ ବୁଲୁଛି । ମୋର ଛୋଟ ଛୋଟ ପିଲା ଦୁଇଟି ମୋ ବାପାଙ୍କ ପାଖରେ ଅଛନ୍ତି । ସେ ଦୁହେଁ ତାଙ୍କ ବାପାଙ୍କୁ ନ ଦେଖି ଦୁଃଖୀ ହେଉଥିବେ । ସେମାନେ କି ଅବସ୍ଥାରେ ଥିବେ କେଜାଣି? ତୁମେ ଯଦି ମୋର ହିତ ଚାହୁଁଛ, ତାହେଲେ ମୋତେ ବିଦର୍ଭ ଦେଶକୁ ପଠାଇ ମୋର ଇଚ୍ଛା ପୂରଣ କର ।" ରାଜମାତା ଏହା ଶୁଣି ବହୁତ ଖୁସୀ ହେଲେ । ସେ ନିଜର ପୁତ୍ରକୁ କହି ପାଲିଙ୍କି ମଗାଇଲେ । ଖାଦ୍ୟ, ବସ୍ତ୍ର ଏବଂ ଅନ୍ୟାନ୍ୟ ନାନା ପ୍ରକାର ଦ୍ରବ୍ୟ ଦେଇ ଏକ ବିରାଟ ସୈନ୍ୟଦଳଙ୍କ ତତ୍ତ୍ୱାବଧାନରେ ଦମୟନ୍ତୀଙ୍କୁ ବିଦା କରିଦେଲେ । ବିଦର୍ଭଦେଶରେ ଦମୟନ୍ତୀଙ୍କର ବହୁତ ସତ୍କାର କରାଗଲା । ଦମୟନ୍ତୀଙ୍କର ଏଥର ନିଜ ଭାଇ, ପିଲା, ପିତାମାତା ଏବଂ ସଖୀମାନଙ୍କ ସହିତ ମିଳନ ହେଲା । ସେ ଦେବତା ଏବଂ ବ୍ରାହ୍ମଣମାନଙ୍କୁ ପୂଜା କଲେ । ରାଜା ଭୀମଙ୍କୁ ନିଜର କନ୍ୟା ମିଳିଯିବାରୁ ସେ ମଧ୍ୟ ବହୁତ ଖୁସୀ ହେଲେ । ସେ ସୁଦେବ ବ୍ରାହ୍ମଣଙ୍କୁ ଏକ ହଜାର ଗାଈ, ଗ୍ରାମ ତଥା ଧନ ଦେଇ ସନ୍ତୁଷ୍ଟ କଲେ ।

✦✦✦

# ନଳଙ୍କୁ ଖୋଜିବା, ଋତୁପର୍ଣ୍ଣଙ୍କର ବିଦର୍ଭ ଯାତ୍ରା ଏବଂ କଳିଯୁଗ ନିଷ୍କାସିତ ହେବା

ବୃହଦଶ୍ୱ କହିଲେ—ହେ ଯୁଧିଷ୍ଠିର! ଦମୟନ୍ତୀ ଦିନେ ପିତୃଗୃହରେ ବିଶ୍ରାମ କରିବାବେଳେ ତାଙ୍କ ମାଆଙ୍କୁ କହିଲେ, ''ମାଆ ! ମୁଁ ସତ କଥା କହୁଛି; ଯଦି ମୋତେ ତୁମେ ଜୀବିତ ଦେଖିବାକୁ ଚାହୁଁଛ, ତେବେ ଶୀଘ୍ର ମୋ ସ୍ୱାମୀଙ୍କୁ ଖୋଜିବାକୁ ଚେଷ୍ଟା କର ।'' ଏହା ଶୁଣି ରାଣୀ ରାଜା ଭୀମଙ୍କୁ ଏକଥା ଜଣାଇଲେ । ସେ ଦୁଃଖ ପ୍ରକାଶ କରି କହିଲେ, ''ଦମୟନ୍ତୀ ତାର ସ୍ୱାମୀ ପାଇଁ ବହୁତ ବ୍ୟାକୁଳ ହେଉଛି । ସେ ସଙ୍କୋଚ ନ କରି ମୋତେ କହିଦେଲା । ତେଣୁ ନଳଙ୍କୁ ଖୋଜିବା ଆବଶ୍ୟକ ।'' ଏହା ଶୁଣି ରାଜା ତାଙ୍କର ଆଶ୍ରିତ ବ୍ରାହ୍ମଣମାନଙ୍କୁ ଡକାଇଲେ ଏବଂ ନଳଙ୍କୁ ଖୋଜିବା ପାଇଁ ସେମାନଙ୍କୁ ନିଯୁକ୍ତ କଲେ । ବ୍ରାହ୍ମଣମାନେ ଦମୟନ୍ତୀଙ୍କ ପାଖକୁ ଯାଇ କହିଲେ, ''ଆମେ ଏବେ ନଳଙ୍କୁ ଖୋଜିବା ପାଇଁ ଯାଉଛୁ ।'' ଦମୟନ୍ତୀ କହିଲେ, ''ଆପଣମାନେ ଯେଉଁ ରାଜ୍ୟକୁ ଯିବେ, ସେଠାରେ ବହୁ ଲୋକଙ୍କ ଗହଳିରେ ଏହିପରି କହିବେ—'ହେ ପ୍ରିୟତମ ଛଳିଆ ନାଗର! ତୁମେ ମୋ ଶାଢ଼ୀରୁ ଅଧା ଚିରିନେଇ ଏବଂ ଏ ଅଭାଗିନୀ ଦାସୀକୁ ବନରେ ଶୋଇଥିବା ଅବସ୍ଥାରେ ଛାଡ଼ିଦେଇ କେଉଁଠିକୁ ଚାଲିଗଲ? ତୁମର ସେହି ଦାସୀ ଏବେ ବି ସେଇ ଅଧା ଶାଢ଼ୀ ପିନ୍ଧି ତୁମର ଫେରିବା ବାଟ ଚାହିଁ ବସିଛି । ସେ ତୁମ ବିୟୋଗରେ ବ୍ୟାକୁଳ ହେଉଛି ।*' ତାଙ୍କୁ ପାଇଲେ ତାଙ୍କ ଆଗରେ ମୋ ଅବସ୍ଥା କଥା ବର୍ଣ୍ଣନା କରିବେ ଏବଂ ଏମିତି କଥା କହିବେ, ଯେମିତି ସେ ପ୍ରସନ୍ନ ହୋଇ ମୋ ଉପରେ ଦୟା କରିବେ । ମୋର ଏ କଥା କହିବା ପରେ ଯଦି କେହି ଉତ୍ତର ଦିଅନ୍ତି, ତେବେ ସେ କିଏ ଏବଂ କେଉଁଠି ରହୁଛନ୍ତି, ଏ ସବୁ ତଥ୍ୟ ସଂଗ୍ରହ କରିବେ ଏବଂ ସେ କି କି ଉତ୍ତର

---

* କ୍ୱ ନୁ ତ୍ୱଂ କିତବଚ୍ଛିତ୍ତ୍ୱା ବସ୍ତ୍ରାର୍ଦ୍ଧଂ ପ୍ରସ୍ଥିତୋ ମମ ।
ଉତ୍ସୃଜ୍ୟ ବିପିନେ ସୁପ୍ତାମନୁରକ୍ତାଂ ପ୍ରିୟାଂ ପ୍ରିୟ ॥
ସା ବୈ ଯଥା ତ୍ୱୟା ଦୃଷ୍ଟା ତଥାଽଽସ୍ତେ ତ୍ୱତ୍ପ୍ରତୀକ୍ଷିଣୀ ।
ଦହ୍ୟମାନା ଭୃଶଂ ବାଳା ବସ୍ତ୍ରାର୍ଦ୍ଧେନାଭିସଂବୃତା ॥
(ମହାଭା. ବନ. ୬୯ । ୩୭, ୩୮)

ଦେଲେ, ତାହା ଆସି ମୋତେ ଶୁଣାଇବେ । ଆଉ ଏ କଥା ବି ମନେ ରଖନ୍ତୁ ଯେ ଆପଣମାନେ ମୋ ଆଜ୍ଞାରେ ଏଭଳି କହୁଛନ୍ତି ବୋଲି ଯେପରି ତାଙ୍କୁ ଜଣା ନ ପଡ଼େ ।'' ବ୍ରାହ୍ମଣମାନେ ଦମୟନ୍ତୀଙ୍କ ନିର୍ଦ୍ଦେଶାନୁସାରେ ରାଜା ନଳଙ୍କୁ ଖୋଜିବା ପାଇଁ ବାହାରି ପଡ଼ିଲେ ।

ବହୁ ଦିନ ଖୋଜିବା ପରେ ସେମାନଙ୍କ ମଧ୍ୟରୁ ପର୍ଣ୍ଣାଦ ନାମକ ଜଣେ ବ୍ରାହ୍ମଣ ରାଜମହଲକୁ ଫେରି ଦମୟନ୍ତୀଙ୍କୁ କହିଲେ—ରାଜକୁମାରୀ! ମୁଁ ଆପଣଙ୍କ ନିର୍ଦ୍ଦେଶାନୁସାରେ ନଳଙ୍କୁ ଖୋଜି ଖୋଜି ଅଯୋଧ୍ୟାରେ ଯାଇ ପହଞ୍ଚିଲି । ସେଠାରେ ରାଜା ଋତୁପର୍ଣ୍ଣଙ୍କ ପାଖକୁ ଯାଇ ପୂର୍ଣ୍ଣସଭାରେ ତୁମ କଥାକୁ ଉଚ୍ଚାରଣ କଲି । କିନ୍ତୁ କେହି ଉତ୍ତର ଦେଲେ ନାହିଁ । ଯେତେବେଳେ ମୁଁ ଫେରିବାକୁ ଉଦ୍ୟତ ହେଲି, ସେତେବେଳେ ତାଙ୍କର ବାହୁକ ନାମକ ସାରଥି ମୋତେ ନିରୋଳାକୁ ଡାକିନେଇ କେତୋଟି କଥା କହିଲେ । ଦେବୀ! ସେହି ସାରଥି ଜଣକ ରାଜା ଋତୁପର୍ଣ୍ଣଙ୍କର ଘୋଡ଼ାଙ୍କୁ ତାଲିମ ଦିଏ, ସ୍ୱାଦିଷ୍ଟ ରୋଷେଇ କରେ । କିନ୍ତୁ ତାର ହାତ ଛୋଟ ଛୋଟ ଏବଂ ଶରୀର ଦେଖିବାକୁ କୁରୂପ । ସେ ଦୀର୍ଘଶ୍ୱାସ ଛାଡ଼ି କାନ୍ଦି କାନ୍ଦି କହିଲା, ''କୁଳୀନ ନାରୀମାନେ ଯେତେ କଷ୍ଟ ପାଇଲେ ମଧ୍ୟ ନିଜର ଧର୍ମ ଛାଡ଼ନ୍ତି ନାହିଁ ଏବଂ ନିଜର ସତୀତ୍ୱ ବଳରେ ସ୍ୱର୍ଗକୁ ମଧ୍ୟ ଜିଣିଯାଆନ୍ତି । ସେମାନଙ୍କ ସ୍ୱାମୀ ଯଦି ସେମାନଙ୍କୁ ଛାଡ଼ି ଦିଅନ୍ତି, ତଥାପି ସେମାନେ କ୍ରୋଧ ନ କରି ନିଜର ସଦାଗ୍ରର ରକ୍ଷା କରନ୍ତି ।* ସେହି ନାରୀକୁ ଛାଡ଼ି ଦେଇଥିବା ସ୍ୱାମୀ ବିପଦରେ ପଡ଼ିଥିବା ହେତୁ ଦୁଃଖୀ ଓ ଚେତନାଶୂନ୍ୟ ପରି ହୋଇ ଯାଇଥିଲା, ତେଣୁ ତା' ଉପରେ କ୍ରୋଧ କରିବା ଉଚିତ ନୁହେଁ । ମୁଁ ମାନୁଛି ଯେ ସ୍ୱାମୀ ତା' ସ୍ତ୍ରୀର ଉପଯୁକ୍ତ ସେବା କରିପାରି ନ ଥିଲା, ମାତ୍ର ସେତେବେଳେ ସେ ରାଜବୈଭବଚ୍ୟୁତ, କ୍ଷୁଧାତୁର, ଦୁଃଖିତ ଓ ଦୁର୍ଦ୍ଦଶାଗ୍ରସ୍ତ ଥିଲା । ଏପରି

---

* ବୈଷମ୍ୟାପି ସମ୍ପ୍ରାପ୍ତା ଗୋପାୟନ୍ତି କୁଳସ୍ତ୍ରିୟଃ ।
ଆତ୍ମାନମାତ୍ମନା ସତ୍ୟୋ ଜିତଃ ସ୍ୱର୍ଗୋ ନ ସଂଶୟଃ ॥
ରହିତା ଭର୍ତ୍ତୃଭିଶ୍ଚୈବ ନ କୁପ୍ୟନ୍ତି କଦାଚନ ।
ପ୍ରାଣାଂଶ୍ଚାରିତ୍ରକବଚ୍ଚନ୍ ଧାରୟନ୍ତି ବରସ୍ତ୍ରିୟଃ ॥
(ମହାଭା. ବନ. ୭୦।୮, ୯)

ସ୍ଥିତିକୁ ବିଗ୍ଭର କରି ତା ଉପରେ କ୍ରୋଧ କରିବା ଉଚିତ ନୁହେଁ। ସେ ନିଜର ପ୍ରାଣରକ୍ଷା କରିବାକୁ କିଛି ଧନ ଗ୍ଭହୁଁଥିବା ବେଳେ ପକ୍ଷୀମାନେ ତାର ବସ୍ତ୍ର ନେଇ ଉଡ଼ି ପଳାଇଲେ। ତାର ହୃଦୟର ବେଦନା ସେତେବେଳେ ଅସହ୍ୟ ଥିଲା।'' ରାଜକୁମାରୀ ! ବାହୁକର ଏହିସବୁ କଥା ଶୁଣାଇବା ନିମନ୍ତେ ମୁଁ ତୁମ ପାଖକୁ ଆସିଛି। ଏଣିକି ତୁମର ଯାହା ଇଚ୍ଛା କର। ଯଦି ଗ୍ଭହୁଁଛ, ମହାରାଜାଙ୍କୁ ମଧ୍ୟ ଏ କଥା କହିପାର।

ବ୍ରାହ୍ମଣଙ୍କର ଏ କଥା ଶୁଣି ଦମୟନ୍ତୀଙ୍କର ଆଖି ଅଶ୍ରୁ ଛଳଛଳ ହୋଇଗଲା। ସେ ତାଙ୍କ ମାଆଙ୍କୁ ନିରୋଳାରେ ଏ କଥା ଜଣାଇ ସାରି କହିଲେ, ତୁମେ ଏ କଥା ଏବେ ବାପାଙ୍କୁ କୁହ ନାହିଁ। ମୁଁ ସୁଦେବ ବ୍ରାହ୍ମଣଙ୍କୁ ଏହି କାମରେ ନିଯୁକ୍ତ କରୁଛି। ଯେପରି ସୁଦେବ ଶୁଭମୁହୂର୍ତ୍ତରେ ମୋତେ ଏଠାରେ ପହଞ୍ଚାଇଥିଲେ, ସେହିପରି ଶୁଭବେଳା ଦେଖି ଅଯୋଧ୍ୟା ଯାଆନ୍ତୁ ଏବଂ ମୋ ସ୍ୱାମୀଙ୍କୁ ଆଣିବାକୁ ଚେଷ୍ଟା କରନ୍ତୁ। ଏହା ପରେ ଦମୟନ୍ତୀ ପର୍ଣ୍ଣାଦଙ୍କର ଯଥୋଚିତ ସତ୍କାର କରି ତାଙ୍କୁ ବିଦା କଲେ ଏବଂ ସୁଦେବଙ୍କୁ ଡକାଇ କହିଲେ, ''ଆପଣ ଶୀଘ୍ର ଅଯୋଧ୍ୟା ଯାଇ ରାଜା ଋତୁପର୍ଣ୍ଣଙ୍କୁ କହନ୍ତୁ ଯେ ଭୀମଙ୍କର କନ୍ୟା ଦମୟନ୍ତୀ ପୁଣି ଥରେ ସ୍ୱୟଂବରରେ ନିଜ ଇଚ୍ଛା ଅନୁସାରେ ସ୍ୱାମୀ ବରଣ କରିବାକୁ ଗ୍ଭହାନ୍ତି। ବଡ଼ ବଡ଼ ରାଜା ଓ ରାଜକୁମାର ସେଠାକୁ ଆସୁଛନ୍ତି। ସ୍ୱୟଂବରର ତିଥି ଆସନ୍ତା କାଲି। ଯଦି ଆପଣ ଏତେ ଶୀଘ୍ର ପହଞ୍ଚି ପାରିବେ, ତେବେ ଯାଆନ୍ତୁ। ନଳ ବଞ୍ଚିଛନ୍ତି କିଂବା ମରିଛନ୍ତି, କାହାରିକୁ ଜଣାନାହିଁ। ତେଣୁ ସେ କାଲି ସୂର୍ଯ୍ୟୋଦୟ ସମୟରେ ଦ୍ୱିତୀୟ ପତି ବରଣ କରିବେ।'' ଦମୟନ୍ତୀଙ୍କ କଥା ଶୁଣି ସୁଦେବ ଅଯୋଧ୍ୟା ଯାଇ ରାଜା ଋତୁପର୍ଣ୍ଣଙ୍କୁ ସବୁ କଥା କହିଦେଲେ।

ରାଜା ଋତୁପର୍ଣ୍ଣ ସୁଦେବଙ୍କ କଥା ଶୁଣି ବାହୁକକୁ ଡକାଇଲେ ଏବଂ ମଧୁରଭାବରେ ବୁଝାଇ କହିଲେ, ''ବାହୁକ! ଆସନ୍ତା କାଲି ଦମୟନ୍ତୀର ସ୍ୱୟଂବର। ତେଣୁ ମୁଁ ଗୋଟିଏ ଦିନରେ ବିଦର୍ଭଦେଶରେ ପହଞ୍ଚିବାକୁ ଗ୍ଭହୁଁଛି। କିନ୍ତୁ ତୁମେ ଯଦି ଏତେ ଶୀଘ୍ର ସେଠାରେ ପହଞ୍ଚାଇ ଦେଇପାରିବ, ତେବେ ମୁଁ ଯିବି।'' ଏ କଥା ଶୁଣି ନଳଙ୍କର ହୃଦୟ ଫାଟିଯିବା ପରି ଲାଗିଲା। ସେ ମନେ ମନେ ଭାବିଲେ, ''ଦମୟନ୍ତୀ ଅତିଶୟ ଦୁଃଖରେ

ଏପରି କହିଦେଇଥିବ । ସମ୍ଭବତଃ ଏହା ସତ୍ୟ ମଧ୍ୟ ହୋଇପାରେ । ନା, ନା, ସେ ସମ୍ଭବତଃ ମୋତେ ପାଇବା ପାଇଁ ଏଭଳି ଉପାୟ କରିଛି । ସେ ପତିବ୍ରତା, ତପସ୍ୱିନୀ ଏବଂ ଦୁଃଖିନୀ ମଧ୍ୟ । ମୁଁ ମୋର ଦୁର୍ବୁଦ୍ଧି ହେତୁ ତାକୁ ପରିତ୍ୟାଗ କରି ଭୀଷଣ କ୍ରୂରତା କରିଛି । ଅପରାଧ ମୋର । ସେ କଦାପି ଏପରି କରିପାରିବ ନାହିଁ । ସତ୍ୟ କେଉଁଟା, ଅସତ୍ୟ କେଉଁଟା, ତାହା କେବଳ ସେଠାକୁ ଗଲେ ହିଁ ଜଣାପଡ଼ିବ । ସେ ଯାହା ହେଲେ ବି, ଋତୁପର୍ଣ୍ଣଙ୍କର ଇଚ୍ଛା ପୂରଣ କରିବାରେ ମୋର ମଧ୍ୟ ସ୍ୱାର୍ଥ ଅଛି ।'' ଏହା ଭାବି ବାହୁକ ହାତ ଯୋଡ଼ି କହିଲା, ''ମୁଁ ଆପଣଙ୍କ କହିବା ଅନୁସାରେ କାର୍ଯ୍ୟ କରିବାକୁ ପ୍ରତିଜ୍ଞା କରୁଛି ।'' ବାହୁକ ଅଶ୍ୱଶାଳାକୁ ଯାଇ ଉତ୍ତମ ଘୋଡ଼ାମାନଙ୍କୁ ପରୀକ୍ଷା କଲେ ଏବଂ ସେଥିମଧ୍ୟରୁ ଉତ୍ତମ ଜାତିର ଚ୍ୟାରୋଟି ଦ୍ରୁତଗାମୀ ଘୋଡ଼ା ବାଛି ରଥରେ ଯୋଚିଦେଲେ । ରାଜା ଋତୁପର୍ଣ୍ଣ ଯିବାକୁ ପ୍ରସ୍ତୁତ ହୋଇ ରଥରେ ବସିଗଲେ । ପକ୍ଷୀ ଯେପରି ଆକାଶରେ ଉଡ଼େ, ବାହୁକର ଚ୍ୟାଳନାରେ ରଥ ସେହିପରି ଖୁବ୍ ତୀବ୍ର ଗତିରେ ନଦୀ, ପର୍ବତ ଏବଂ ବନକୁ ଲଂଘି ଚ୍ୟାଲିଲା । ଗୋଟିଏ ସ୍ଥାନରେ ଋତୁପର୍ଣ୍ଣଙ୍କର ଉତ୍ତରୀୟ ତଳକୁ ଖସିପଡ଼ିଲା । ସେ ବାହୁକକୁ କହିଲେ, ''ରଥ ରଖ । ମୁଁ ବାର୍ଷ୍ଣେୟକୁ କହି ତାହାକୁ ଉଠାଇ ଆଣେ ।'' ନଳ କହିଲେ, ''ଆପଣଙ୍କ ବସ୍ତ୍ର ଏହିକ୍ଷଣି ତଳେ ପଡ଼ିଲା ସତ, କିନ୍ତୁ ଆମେ ସେଠାରୁ ଏକ ଯୋଜନ ଆଗକୁ ଆସି ସାରିଲେଣି । ବର୍ତ୍ତମାନ ଆଉ ତାହା ଅଣାଯାଇ ପାରିବ ନାହିଁ ।'' ସେମାନେ ଏହିପରି କଥାବାର୍ତ୍ତା ହେଉଥିବା ସମୟରେ ରଥ ଗୋଟିଏ ଜଙ୍ଗଲ ଭିତର ଦେଇ ଯାଉଥିଲା । ଋତୁପର୍ଣ୍ଣ କହିଲେ, ''ତୁମକୁ ମୁଁ ମୋର ଗଣିତବିଦ୍ୟାର ଗୋଟିଏ ଅଦ୍ଭୁତ ଚମତ୍କାରିତା ଦେଖାଉଛି । ସମ୍ମୁଖରେ ଯେଉଁ ଗଛଟି ଦେଖାଯାଉଛି, ସେଥିରେ ଯେତିକି ପତ୍ର ଓ ଫଳ ବର୍ତ୍ତମାନ ଅଛି, ତଳେ ଝଡ଼ି ପଡ଼ିଥିବା ପତ୍ର ଓ ଫଳ ସଂଖ୍ୟା ତା' ଅପେକ୍ଷା ଶହେଏକ ଗୁଣ ଅଧିକ । ଗଛଟିର ଦୁଇ ଶାଖାରେ ପାଞ୍ଚ କୋଟି ପତ୍ର ଓ ଦୁଇ ହଜାର ପଞ୍ଚାନବେଟି ଫଳ ଅଛି । ତୁମର ଯଦି ଇଚ୍ଛା ହେଉଛି, ଗଣି ଦେଖିପାର ।'' ବାହୁକ ରଥ ଠିଆ କରାଇ କହିଲା, ''ମୁଁ ଏଇ ବାହାଡ଼ା ଗଛଟିକୁ କାଟି ତାହାର ଫଳ ଓ ପତ୍ରକୁ ଗଣିବି ।'' ବାହୁକ ଗଣିବାରୁ ରାଜାଙ୍କ କହିବା ସତ୍ୟ ହେଲା । ନଳ

ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ କହିଲେ, "ଆପଣଙ୍କର ବିଦ୍ୟା ଅତି ଅଦ୍ଭୁତ । ଆପଣ ମୋତେ ସେହି ବିଦ୍ୟା ଶିଖାଇ ଦିଅନ୍ତୁ ।" ଋତୁପର୍ଣ୍ଣ କହିଲେ, "ଗଣିତ ବିଦ୍ୟା ଭଳି ପଶା-ବଶୀକରଣ ବିଦ୍ୟାରେ ମଧ୍ୟ ମୁଁ ପାରଙ୍ଗମ ।" ବାହୁକ କହିଲେ, "ଆପଣ ମୋତେ ଏହି ପଶାବିଦ୍ୟା ଯଦି ଶିଖାଇ ଦେବେ, ତେବେ ମୁଁ ଆପଣଙ୍କୁ ଅଶ୍ୱବିଦ୍ୟା ଶିଖାଇଦେବି ।" ଋତୁପର୍ଣ୍ଣଙ୍କୁ ବିଦର୍ଭଦେଶରେ ଶୀଘ୍ର ପହଞ୍ଚିବାର ଥିଲା ଏବଂ ଅଶ୍ୱବିଦ୍ୟା ଶିଖିବାର ଲୋଭ ମଧ୍ୟ ଥିଲା । ତେଣୁ ସେ ରାଜା ନଳଙ୍କୁ ପଶାଖେଳର ବିଦ୍ୟା ଶିଖାଇ ଦେଲେ ଏବଂ କହିଲେ, "ଅଶ୍ୱବିଦ୍ୟା ତୁମେ ମୋତେ ପରେ ଶିଖାଇ ଦେବ । ଏହା ତୁମ ପାଖରେ ଧାର ସ୍ୱରୂପ ରହିଲା ।"

ରାଜା ନଳ ପଶାବିଦ୍ୟା ଶିଖୁଥିବାବେଳେ ତାଙ୍କ ଦେହରୁ କଳିଯୁଗ କର୍କୋଟକ ନାଗର ତୀକ୍ଷ୍ଣ ବିଷକୁ ଉଦ୍‌ଗୀରଣ କରି କରି ବାହାରକୁ ବାହାରି ଆସିଲା । କଳିଯୁଗ ବାହାରି ଆସିବାରୁ ତାକୁ ଦେଖି ନଳ ତା ଉପରେ ଭୀଷଣ ରାଗିଗଲେ । ସେ ତାକୁ ଅଭିଶାପ ଦେବାକୁ ଚାହିଁଲେ । କଳିଯୁଗ ଭୟରେ ଥରହର ହୋଇ କହିଲା, "କ୍ରୋଧ ଶାନ୍ତ କରନ୍ତୁ । ମୁଁ ଆପଣଙ୍କୁ ଯଶସ୍ୱୀ କରିଦେବି । ଆପଣ ଦମୟନ୍ତୀଙ୍କୁ ଛାଡ଼ି ଚାଲିଯିବା ପରେ ସେ ମୋତେ ଅଭିଶାପ ଦେଇଥିଲେ । ମୁଁ କର୍କୋଟକ ନାଗର ବିଷଜ୍ୱାଳାରେ ବହୁ କଷ୍ଟରେ ଆପଣଙ୍କ ଦେହରେ ରହିଥିଲି । ମୁଁ ଆପଣଙ୍କର ଶରଣ ପଶୁଛି; ମୋର ପ୍ରାର୍ଥନା ଶୁଣନ୍ତୁ ଏବଂ ମୋତେ ଅଭିଶାପ ଦିଅନ୍ତୁ ନାହିଁ । ଯେଉଁମାନେ ଆପଣଙ୍କ ଚରିତ ଗାନ କରିବେ, ସେମାନଙ୍କର ମୋ ପ୍ରତି ଭୟ ରହିବ ନାହିଁ ।" ଏହା ଶୁଣି ନଳ କ୍ରୋଧ ଶାନ୍ତ କଲେ । କଳିଯୁଗ ଭୟଭୀତ ହୋଇ ବାହାଡ଼ା ଗଛରେ ପଶିଗଲା । ଏ ଘଟଣା ଓ କଥୋପକଥନ କେବଳ କଳିଯୁଗ ଓ ନଳଙ୍କ ବ୍ୟତୀତ ଅନ୍ୟ କେହି ଜାଣି ପାରିଲେ ନାହିଁ । ସେହି ବୃକ୍ଷ ଥୁଣ୍ଟା ହୋଇଗଲା ।*

---

* **ଯେ ଚ ତ୍ୱାଂ ମନୁଜା ଲୋକେ କୀର୍ତ୍ତୟିଷ୍ୟନ୍ତ୍ୟତନ୍ଦ୍ରିତଃ ।**
**ମତ୍‌ପ୍ରସୂତଂ ଭୟଂ ତେଷାଂ ନ କଦାଚିଦ୍ ଭବିଷ୍ୟତି ॥**
**ଭୟାର୍ତ୍ତଂ ଶରଣଂ ଯାତଂ ଯଦି ମାଂ ତ୍ୱଂ ନ ଶପ୍ୟସେ ।**
**ଏବମୁକ୍ତୋ ନଳୋ ରାଜା ନ୍ୟଯଚ୍ଛତ୍ କୋପମାତ୍ମନଃ ॥**

ଏଥର କଳିଯୁଗ ସିନା ନଳଙ୍କ ପିଛା ଛାଡ଼ିଦେଲା, ହେଲେ ନଳଙ୍କ ରୂପ ବଦଳିଲା ନାହିଁ। ସେ ଖୁବ୍ ଦ୍ରୁତଗତିରେ ରଥ ଚଳାଇ ସନ୍ଧ୍ୟା ହେଉ ହେଉ ବିଦର୍ଭ ଦେଶରେ ପହଞ୍ଚିଗଲେ। ରାଜା ଭୀମଙ୍କ ପାଖକୁ ଖବର ପଠାଗଲା। ସେ ରାଜା ଋତୁପର୍ଣ୍ଣଙ୍କୁ ସ୍ୱାଗତ ଜଣାଇଲେ। ଋତୁପର୍ଣ୍ଣଙ୍କ ରଥର ଘର୍ଘର ନାଦରେ ଦିଗବିଦିଗ ପ୍ରକମ୍ପିତ ହୋଇଉଠିଲା। ନଳଙ୍କର ପିଲାମାନଙ୍କୁ ନେଇ ଆସିଥିବା ଘୋଡ଼ାମାନେ କୁଣ୍ଡିନନଗରରେ ରହୁଥିଲେ। ରଥର ଘର୍ଘର ନାଦ ଶୁଣି ସେମାନେ ମଧ୍ୟ ନଳ ଆସିଥିବା କଥା ଜାଣିପାରିଲେ ଏବଂ ବହୁତ ଖୁସୀ ହୋଇଗଲେ। ଦମୟନ୍ତୀଙ୍କୁ ମଧ୍ୟ ସେହି ପରିଚିତ ଶବ୍ଦ ଶୁଣି ଆନନ୍ଦ ଅନୁଭବ ହେଲା। ଦମୟନ୍ତୀ କହିଲେ, "ରଥର ଏହି ଶବ୍ଦ ମୋ ମନରେ ଉଲ୍ଲାସ ଭରି ଦେଉଛି କାହିଁକି? ଏ ରଥର ଚାଳକ ନିଶ୍ଚିତରୂପେ ମୋର ସ୍ୱାମୀ ହୋଇଥିବେ। ଯଦି ସେ ଆଜି ମୋ ପାଖକୁ ନ ଆସିବେ, ମୁଁ ଜଳନ୍ତା ନିଆଁକୁ ଡେଇଁ ପ୍ରାଣ ହରାଇଦେବି। ମୋ ଜାଣିବାରେ, ମୁଁ କେବେ ଥଟ୍ଟାମଜାରେ ମଧ୍ୟ ତାଙ୍କୁ ମିଛ କହିନାହିଁ, ତାଙ୍କର କୌଣସି ଅପକାର କରିନାହିଁ, ପ୍ରତିଜ୍ଞା କରି ପୁଣି ପ୍ରତିଜ୍ଞା ଭଙ୍ଗ କରିନାହିଁ। ସେ ଶକ୍ତିଶାଳୀ, କ୍ଷମାଶୀଳ, ବୀର, ଦାନୀ ଏବଂ ଏକପତ୍ନୀବ୍ରତଧାରୀ। ତାଙ୍କ ବିୟୋଗରେ ମୋର ଛାତି ଫାଟିଯାଉଛି।" ଦମୟନ୍ତୀ ରାଜଭବନର ଛାତ ଉପରକୁ ଯାଇ ରଥ ଆସିବା ଏବଂ ତହିଁରୁ ଓହ୍ଲାଉଥିବା ରଥୀ ଓ ସାରଥିଙ୍କୁ ଦେଖିଲେ।

+++

## ନଳଙ୍କୁ ଦମୟନ୍ତୀଙ୍କର ପରୀକ୍ଷା, ନଳ ଚିହ୍ନା ପଡ଼ିବା, ଉଭୟଙ୍କର ମିଳନ, ରାଜ୍ୟପ୍ରାପ୍ତି ଏବଂ ଉପସଂହାର

ବୃହଦଶ୍ୱ କହିଲେ—ହେ ଯୁଧିଷ୍ଠିର! ବିଦର୍ଭନରେଶ ଭୀମ ଅଯୋଧ୍ୟାପତି ଋତୁପର୍ଣ୍ଣଙ୍କୁ ବହୁତ ସ୍ୱାଗତସମ୍ବର୍ଦ୍ଧନା କଲେ। ଋତୁପର୍ଣ୍ଣଙ୍କୁ

---

**ତତୋ ଭୀତଃ କଲିଃ କ୍ଷିପ୍ରଂ ପ୍ରବିବେଶ ବିଭୀତକମ୍।**
**କଲିସ୍ତ୍ୱନ୍ୟୈସ୍ତଦାଦୃଶ୍ୟଃ କଥୟନ୍ ନୈଷଧେନ ବୈ॥**

(ମହାଭା. ବନ. ୭୨।୩୬-୩୮)

ଉତ୍ତମ ସ୍ଥାନରେ ରଖାଗଲା । ସେ କୁଣ୍ଡିନପୁରରେ ସ୍ୱୟଂବରର କୌଣସି ଚିହ୍ନବର୍ଣ୍ଣ ଦେଖିବାକୁ ପାଇଲେ ନାହିଁ । ଭୀମଙ୍କୁ ଏ କଥା ଆଦୌ ଜଣା ନ ଥିଲା ଯେ ଝିଅର ସ୍ୱୟଂବର ସମାଚାର ପାଇ ରାଜା ଋତୁପର୍ଣ୍ଣ ସେଠାକୁ ଆସିଛନ୍ତି । ତେଣୁ ସେ କୁଶଳବାର୍ତ୍ତା ପଚାରିବା ପରେ କହିଲେ, ଆପଣ କେଉଁ ଉଦ୍ଦେଶ୍ୟରେ ଆସିଛନ୍ତି ପ୍ରକାଶ କରନ୍ତୁ । ଋତୁପର୍ଣ୍ଣ ସ୍ୱୟଂବରର କୌଣସି ଆୟୋଜନ ନ ଦେଖି କଥା ଲୁଚାଇଲେ ଏବଂ କହିଲେ, ମୁଁ ତ ଏମିତି କେବଳ ଆପଣଙ୍କୁ ପ୍ରଣାମ କରିବା ନିମନ୍ତେ ଚାଲିଆସିଛି । ଭୀମ ମନେ ମନେ ଭାବିଲେ, ଶହେ ଯୋଜନରୁ ଅଧିକ ପଥ କେହି କେବଳ ପ୍ରଣାମ କରିବାକୁ ଆସି ନ ପାରେ । ହଉ, କିଛି ସମୟ ମଧ୍ୟରେ ଆପେ ଆପେ ସମସ୍ତ କଥା ଜଣାପଡ଼ିଯିବ । ଭୀମ ଖୁବ୍ ଆଦରରେ ତାଙ୍କର ଅଭ୍ୟର୍ଥନା କରି ତାଙ୍କୁ ସେଠାରେ ରଖାଇଲେ । ବାହୁକ ମଧ୍ୟ ବାର୍ଷ୍ଣେୟ ସହିତ ଅଶ୍ୱଶାଳାରେ ରହି ଘୋଡ଼ାଙ୍କ ସେବା କଲେ ।

ଏଣେ ଦମୟନ୍ତୀ ବ୍ୟାକୁଳ ହୋଇ ଭାବିଲେ, ରଥର ଧ୍ୱନି ତ ମୋ ସ୍ୱାମୀଙ୍କ ରଥର ଧ୍ୱନି ପରି ଜଣା ପଡୁଥିଲା, କିନ୍ତୁ କାହିଁ ତାଙ୍କର ତ କେଉଁଠି ଦର୍ଶନ ମିଳୁ ନାହିଁ? ହୁଏତ ବାର୍ଷ୍ଣେୟ ତାଙ୍କ ଠାରୁ ଅଶ୍ୱବିଦ୍ୟା ଶିଖିଯାଇଥିବ । ଏହି କାରଣରୁ ତାଙ୍କରି ରଥର ଧ୍ୱନି ପରି ଶୁଭୁଥିଲା । ସମ୍ଭବତଃ ଋତୁପର୍ଣ୍ଣଙ୍କୁ ମଧ୍ୟ ସେହି ବିଦ୍ୟା ଜଣାଥିବ । ସେ ଦାସୀକୁ ଡକାଇ କହିଲେ, "କେଶିନୀ! ତୁ ଯାଇ ସେ କୁରୂପ ପୁରୁଷ କିଏ, ସେ କଥା ବୁଝ । ସମ୍ଭବତଃ ସେଇ ମୋର ପତିଦେବ ହୋଇଥିବେ । ମୁଁ ବ୍ରାହ୍ମଣ ଦ୍ୱାରା ଯେଉଁ ସନ୍ଦେଶ ପଠାଇଥିଲି, ତୁ ତାଙ୍କୁ ସେଇଆ କହିବୁ ଏବଂ ତାଙ୍କର ଉତ୍ତର ଶୁଣି ଆସି ମୋତେ କହିବୁ ।" କେଶିନୀ ଯାଇ ବାହୁକ ସହ କଥାବାର୍ତ୍ତା କଲା । ବାହୁକ ରାଜାଙ୍କ ଆସିବାର କାରଣ କହିଲେ; ତାଛଡ଼ା ସେ ସଂକ୍ଷେପରେ ବାର୍ଷ୍ଣେୟ ବିଷୟରେ ତଥା ନିଜର ଅଶ୍ୱବିଦ୍ୟା ଓ ରନ୍ଧନ ଦକ୍ଷତା ସମ୍ପର୍କରେ ପରିଚୟ ଦେଲେ । କେଶିନୀ ପଚାରିଲା, "ବାହୁକ ! ରାଜା ନଳ କାହାନ୍ତି? ତୁମେ କଣ ତାଙ୍କ ବିଷୟରେ କିଛି ଜାଣିଛ? ଅଥବା ତୁମର ସାଥୀ ବାର୍ଷ୍ଣେୟ ଜାଣିଛି?" ବାହୁକ କହିଲେ, "କେଶିନୀ ! ବାର୍ଷ୍ଣେୟ ରାଜା ନଳଙ୍କର ପିଲାଙ୍କୁ ଏଠାରେ ଛାଡ଼ି

ଗ୍ଭଲିଯାଇଥିଲା । ତାକୁ ସେ ବିଷୟରେ କିଛି ଜଣା ନାହିଁ । ଏବେ ନଳଙ୍କର ରୂପ ବଦଳିଯାଇଛି; ସେ ଛଦ୍ମବେଶରେ ରହୁଛନ୍ତି । ତେଣୁ ତାଙ୍କୁ କେବଳ ସେ ନିଜେ ଅଥବା ତାଙ୍କ ସ୍ତ୍ରୀ ଦମୟନ୍ତୀ ଚିହ୍ନି ପାରିବେ । ସେ ନିଜର ଗୁପ୍ତ ଚିହ୍ନକୁ ଅନ୍ୟମାନଙ୍କ ଆଗରେ ପ୍ରକଟ କରିବାକୁ ଗ୍ଭହୁଁନାହାନ୍ତି । କେଶିନୀ! ରାଜା ନଳ ବିପଦରେ ପଡ଼ିଯାଇଥିଲେ । ସେଥିପାଇଁ ସେ ତାଙ୍କର ପତ୍ନୀକୁ ଛାଡ଼ି ଗ୍ଭଲିଯାଇଥିଲେ । ଦମୟନ୍ତୀ କଦାପି ନଳଙ୍କ ଉପରେ କ୍ରୋଧ କରିବା ଉଚିତ ନୁହେଁ । ସେ ଖାଦ୍ୟ ଚିନ୍ତାରେ ଥିଲାବେଳେ ପକ୍ଷୀମାନେ ତାଙ୍କର ବସ୍ତ୍ର ନେଇ ଉଡ଼ିଗଲେ । ତାଙ୍କ ହୃଦୟ ଦୁଃଖରେ ଜର୍ଜରିତ ଥିଲା । ଏ କଥା ସତ ଯେ  ସେ ସ୍ତ୍ରୀ ସହିତ ଠିକ୍ ବ୍ୟବହାର କରି ନାହାନ୍ତି, ତଥାପି ଦମୟନ୍ତୀ ତାଙ୍କର ଦୁର୍ଦ୍ଦଶା କଥା ବିଗ୍ଭର କରି କ୍ରୋଧ କରିବା ଉଚିତ ନୁହେଁ ।'' ଏହା କହୁ କହୁ ନଳଙ୍କର ହୃଦୟ ସତେ ଯେପରି ଫାଟି ପଡ଼ିଲା । ତାଙ୍କ ଆଖିରେ ଅଶ୍ରୁ ଆସିଗଲା । ସେ କାନ୍ଦି ପକାଇଲେ । କେଶିନୀ ଦମୟନ୍ତୀଙ୍କ ପାଖକୁ ଆସି ସେଠାକାର ସବୁ କଥାବାର୍ତ୍ତା ଏବଂ ତାଙ୍କର କାନ୍ଦିବା କଥା ମଧ୍ୟ କହିଲା ।

ଏଥର ଦମୟନ୍ତୀଙ୍କର ସନ୍ଦେହ ଧୀରେ ଧୀରେ ଦୃଢ଼ତା ଆଡ଼କୁ ଗତି କଲା । ତାଙ୍କୁ ଲାଗିଲା, ସମ୍ଭବତଃ ଏହି ହେଉଛନ୍ତି ରାଜା ନଳ । ସେ କହିଲେ, ''କେଶିନୀ! ତୁ ପୁଣି ବାହୁକ ପାଖକୁ ଯାଆ ଏବଂ ତାକୁ କିଛି ନ କହି ତା ପାଖରେ ଛିଡ଼ା ହୋଇ ରହ । ତା' କାର୍ଯ୍ୟକଳାପ ଉପରେ ଦୃଷ୍ଟି ରଖ । ସେ ନିଆଁ ମାଗିଲେ ଦେବୁ ନାହିଁ । ଜଳ ମାଗିଲେ ଡେରି କରି ନେବୁ । ତାର ଗୋଟି ଗୋଟି କଥା ମୋତେ ଆସି କହ ।'' କେଶିନୀ ପୁଣି ବାହୁକ ପାଖକୁ ଗଲା ଏବଂ ବାହୁକଠାରେ ଦେବତା ଓ ମନୁଷ୍ୟଙ୍କର ଅନେକ ଲକ୍ଷଣ ଦେଖି ଆସି ଦମୟନ୍ତୀଙ୍କୁ କହିଲା । ସେ କହିଲା, ''ରାଜକୁମାରୀ! ବାହୁକ ତ ଜଳ, ସ୍ଥଳ ଏବଂ ଅଗ୍ନି ଉପରେ ସବୁ ପ୍ରକାରେ ବିଜୟ ଲାଭ କରିଛନ୍ତି ! ମୁଁ ଆଜି ପର୍ଯ୍ୟନ୍ତ ଏଭଳି ପୁରୁଷ କେଉଁଠି ଦେଖିନାହିଁ କି ଶୁଣି ନାହିଁ । ଯଦି କୌଣସି ସ୍ଥାନରେ ଦ୍ୱାରବନ୍ଧ ନୀଗ୍ଭ ଥାଏ, ତେବେ ସେ ସେଠାରେ ମୁଣ୍ଡ ନୁଆଁଇ ଯାଆନ୍ତି ନାହିଁ; ମୁଁ ଦେଖିଲି, ଦ୍ୱାର ତାଙ୍କୁ ଦେଖି ଉଚ୍ଚା ହୋଇଯାଉଥାଏ । କ୍ଷୁଦ୍ରାତିକ୍ଷୁଦ୍ର ଛିଦ୍ର

ମଧ୍ୟ ତାଙ୍କ ପାଇଁ ଗୁମ୍ଫା ପରି ବଡ଼ ହୋଇଯାଉଥାଏ। ସେଠାରେ ଯେଉଁ ମାଠିଆ ଥିଲା, ତାଙ୍କର ଦୃଷ୍ଟି ପଡ଼ିବାମାତ୍ରେ ତାହା ଆପେ ଆପେ ଜଳପୂର୍ଣ୍ଣ ହୋଇଗଲା। ସେ କୁଟା ଲୁଣ୍ଡାଏ ନେଇ ସୂର୍ଯ୍ୟଙ୍କ ଆଡ଼କୁ ଦେଖାଇଲେ ଏବଂ ତାହା ଆପେ ଆପେ ଜଳିଲା। ଏହାଛଡ଼ା ସେ ଅଗ୍ନିକୁ ସ୍ପର୍ଶ କଲେ ମଧ୍ୟ ପୋଡ଼ି ଯାଉ ନାହାନ୍ତି। ପାଣି ତାଙ୍କ ଇଚ୍ଛା ଅନୁସାରେ ବହୁଛି। ତାଙ୍କ ହାତର ଫୁଲ ମଉଳି ନ ଯାଇ ସତେଜ ଓ ସୁଗନ୍ଧିତ ରହୁଛି। ଏହି ସବୁ ଅଦ୍ଭୁତ ଲକ୍ଷଣ ଦେଖି ମୁଁ ତ ତାଟକା ହୋଇଗଲି ଏବଂ ଶୀଘ୍ର ତୁମକୁ କହିବାକୁ ଚାଲିଆସିଲି।'' ଦମୟନ୍ତୀ ବାହୁକର କାର୍ଯ୍ୟକଳାପ ଓ ଦକ୍ଷତା ବିଷୟରେ ଶୁଣି ନିଃସନ୍ଦେହ ହୋଇଗଲେ ଯେ ସେ ହିଁ ତାଙ୍କର ସ୍ୱାମୀ। ସେ କେଶିନୀ ସଙ୍ଗରେ ନିଜର ପିଲା ଦୁଇଟିଙ୍କୁ ନଳଙ୍କ ପାଖକୁ ପଠାଇଦେଲେ। ବାହୁକ ତାଙ୍କର ସନ୍ତାନ ଇନ୍ଦ୍ରସେନା ଓ ଇନ୍ଦ୍ରସେନଙ୍କୁ ଚିହ୍ନି ସେମାନଙ୍କ ପାଖକୁ ଆସିଲେ ଏବଂ ପିଲା ଦୁଇଟିଙ୍କୁ ସ୍ନେହରେ ଆଲିଙ୍ଗନ କରି କୋଳରେ ବସାଇଲେ। ବାହୁକ ନିଜର ସନ୍ତାନଙ୍କ ସହ ମିଳିତ ହୋଇ ବ୍ୟାକୁଳ ହୋଇ ପଡ଼ିଲେ ଏବଂ କାନ୍ଦି ପକାଇଲେ। ତାଙ୍କ ମୁଖମଣ୍ଡଳରେ ପିତୃତ୍ୱସ୍ନେହ ପ୍ରକାଶିତ ହୋଇଗଲା। ତାପରେ ସେ ପିଲା ଦୁହିଙ୍କୁ କେଶିନୀକୁ ଦେଇ କହିଲେ, ''ଏ ପିଲା ଦୁଇଟି ମୋ ପିଲାଙ୍କ ପରି ହୋଇଛନ୍ତି। ତେଣୁ ତାଙ୍କୁ ଦେଖି କାନ୍ଦ ମାଡ଼ିଲା। କେଶିନୀ! ତୁମେ ବାରମ୍ବାର ମୋ ପାଖକୁ ଆସୁଛ, ଲୋକେ କଣ ଭାବୁଥିବେ କେଜାଣି? ତେଣୁ ମୋ ପାଖକୁ ତୁମେ ବାରମ୍ବାର ନ ଆସିବା ଭଲ। ତୁମେ ଯାଅ।'' କେଶିନୀ ଦମୟନ୍ତୀଙ୍କ ପାଖକୁ ଯାଇ ସବୁ କଥା କହିଲା।

ଏଥର ଦମୟନ୍ତୀ କେଶିନୀକୁ ନିଜର ମାଆଙ୍କ ପାଖକୁ ପଠାଇଲେ ଏବଂ କହିଲେ, ''ମାଆଙ୍କୁ ଯାଇ ମୋ କଥା କହିବୁ ଯେ ମୁଁ ରାଜା ନଳ ବୋଲି ଭାବି ବାହୁକକୁ ପରୀକ୍ଷା କରୁଛି। ଏବେ ମୋତେ କେବଳ ତା'ର ରୂପ ବିଷୟରେ ସନ୍ଦେହ ହେଉଛି। ତେଣୁ ମୁଁ ନିଜେ ତାକୁ ପରୀକ୍ଷା କରିବାକୁ ଚାହୁଁଛି। ତେଣୁ ସେ ବାହୁକକୁ ମୋ ଉଆସକୁ ଆସିବାକୁ ଆଜ୍ଞା ଦିଅନ୍ତୁ; ନଚେତ୍ ମୋତେ ତା' ପାଖକୁ ଯିବାକୁ ଆଜ୍ଞା ଦିଅନ୍ତୁ। ତାଙ୍କର ଯଦି ଇଚ୍ଛା ହୁଏ, ବାପାଙ୍କୁ ମଧ୍ୟ ଏ କଥା କହି ପାରନ୍ତି ଅଥବା ନ କହି

ପାରନ୍ତି ।'' ରାଣୀ ସ୍ୱାମୀଙ୍କ ଠାରୁ ଅନୁମତି ନେଇ ବାହୁକକୁ ରାଣୀମହଲକୁ ଡକାଇବା ପାଇଁ ଆଜ୍ଞା ଦେଲେ । ବାହୁକକୁ ଡକାଗଲା । ଦମୟନ୍ତୀଙ୍କୁ ଦେଖିବାମାତ୍ରେ ନଳଙ୍କ ହୃଦୟ ଏକସଙ୍ଗେ ସୁଖ ଓ ଦୁଃଖରେ ଭରିଗଲା । ତାଙ୍କ ଆଖିରୁ ଅଶ୍ରୁଧାରା ବହିଚ୍ଚାଲିଲା । ବାହୁକର ସ୍ଥିତି ଦେଖି ଦମୟନ୍ତୀ ମଧ୍ୟ ଶୋକାକୁଳ ହୋଇଗଲେ । ସେତେବେଳେ ଦମୟନ୍ତୀ ଗେରୁଆ ବସ୍ତ୍ର ପିନ୍ଧିଥିଲେ; ତାଙ୍କର କେଶ ଜଟା ବାନ୍ଧି ଯାଇଥିଲା । ଶରୀର ମଳିନ ଦିଶୁଥିଲା । ଦମୟନ୍ତୀ କହିଲେ, "ବାହୁକ ! ଜଣେ ଧର୍ମଜ୍ଞ ପୁରୁଷ ନିଜର ସ୍ତ୍ରୀକୁ ବନରେ ଶୋଇଥିବା ଅବସ୍ଥାରେ ଛାଡ଼ି ଚ୍ଚାଲିଗଲେ । ତୁମେ ତାଙ୍କୁ କଣ କେଉଁଠି ଦେଖିଛ? ସେତେବେଳେ ସେ ସ୍ତ୍ରୀ କ୍ଳାନ୍ତ ହୋଇ ଶୋଇ ଯାଇଥିଲା, ନିଦ୍ରାରେ ଅଚେତନ ଥିଲା । ଏପରି ଜଣେ ନିରପରାଧ ସ୍ତ୍ରୀକୁ ପୁଣ୍ୟଶ୍ଳୋକ ନିଷଧନରେଶଙ୍କ ବିନା ଆଉ କେଉଁ ପୁରୁଷ ନିର୍ଜନ ବନରେ ଛାଡ଼ି ପାରିବ? ମୋ ଜାଣିବାରେ ମୁଁ ମୋ ଜୀବନରେ ତାଙ୍କ ପ୍ରତି କୌଣସି ଅପରାଧ କରିନାହିଁ । ତଥାପି ସେ ମୋତେ ଶୋଇଥିବା ଅବସ୍ଥାରେ ଛାଡ଼ି ଚ୍ଚାଲିଯାଇଥିଲେ ।'' ଏତିକି କହୁ କହୁ ଦମୟନ୍ତୀଙ୍କ ଆଖିରୁ ଧାର ଧାର ଅଶ୍ରୁ ଗଡ଼ିବାକୁ ଲାଗିଲା । ଦମୟନ୍ତୀଙ୍କର ନୀଳକଇଁ ଭଳି ଶ୍ୟାମଳ ଓ ଆୟତ ନେତ୍ରରୁ ଅଶ୍ରୁ ବହିବାର ଦେଖି ନଳ ଆଉ ସହିପାରିଲେ ନାହିଁ । ସେ କହିଲେ, ପ୍ରିୟେ! ମୁଁ ଜାଣିଶୁଣି ରାଜ୍ୟ ହରାଇ ନାହିଁ କିଂବା ତୁମକୁ ପରିତ୍ୟାଗ କରିନାହିଁ । ଏହା ହେଉଛି କଳିଯୁଗର କର୍ତ୍ତୃତ୍ୱ ।* ମୁଁ ଜାଣିଛି, ଯେବେଠାରୁ ତୁମେ ମୋଠାରୁ ଦୂରରେ ରହିଗଲ, ସେହିଦିନ ଠାରୁ ରାତିଦିନ ମୋତେ ହିଁ ସ୍ମରଣ କରୁଛ ଏବଂ ଚିନ୍ତା କରୁଛ । କଳିଯୁଗ ମୋ ଶରୀରରେ ରହି ମଧ୍ୟ ତୁମର ଅଭିଶାପ ହେତୁ ଜଳୁଥିଲା । ମୁଁ ମୋର ପ୍ରଚେଷ୍ଟା ଓ ତପସ୍ୟା ବଳରେ ତାକୁ ଜୟ କରିପାରିଛି । ଏଣିକି ଆମର ଦୁଃଖ ସରିଗଲା ବୋଲି ଜାଣ । କଳିଯୁଗ ମୋତେ ଛାଡ଼ି ଚ୍ଚାଲିଯାଇଛି । ମୁଁ କେବଳ ତୁମରି ପାଇଁ ଏଠାକୁ ଆସିଛି । ତଥାପି, ତୁମେ ହିଁ କୁହ, ମୋ

---

* **ମମ ରାଜ୍ୟଂ ପ୍ରଣଷ୍ଟଂ ଯନ୍ନାହଂ ତତ୍ କୃତବାନ୍ ସ୍ୱୟମ୍ ।**
**କଳିନା ତତ୍ କୃତଂ ଭୀରୁ ଯଚ୍ଚ ତ୍ୱାମହମତ୍ୟଜମ୍ ॥**

(ମହାଭା. ବନ. ୭୬ । ୧୭)

ଭଳି ପ୍ରିୟତମ ଏବଂ ସରଳ ସ୍ୱାମୀକୁ ଛାଡ଼ି ତୁମେ ଯେପରି ଅନ୍ୟ ଜଣେ ପୁରୁଷକୁ ବିବାହ କରିବାକୁ ବନ୍ଦୋବସ୍ତ କରିଛ, ଆଉ କୌଣସି ସ୍ତ୍ରୀ କଣ ଏଭଳି କରିପାରିବ?* ତୁମର ସ୍ୱୟଂବର କଥା ଶୁଣି ତ ରାଜା ଋତୁପର୍ଣ୍ଣ ଏତେ ଶୀଘ୍ର ଏଠାକୁ ଆସିଛନ୍ତି !

ଦମୟନ୍ତୀ ହାତ ଯୋଡ଼ି କହିଲେ, ସ୍ୱାମୀ! ମୋ ଉପରେ ଦୋଷାରୋପ ନ କରନ୍ତୁ। ଆପଣ ତ ଜାଣିଛନ୍ତି ଯେ ମୋ ଆଗରେ ପ୍ରକଟ ହୋଇଥିବା ଦେବତାମାନଙ୍କୁ ମୁଁ ବରଣ ନ କରି ଆପଣଙ୍କୁ ବରଣ କରିଛି। ମୁଁ ଆପଣଙ୍କୁ ଖୋଜିବା ପାଇଁ ଅନେକ ବ୍ରାହ୍ମଣଙ୍କୁ ପଠାଇଥିଲି ଏବଂ ସେମାନେ ମୁଁ କହିଥିବା କଥାକୁ ଗାଇଆଡ଼େ କହୁଥିଲେ। ପର୍ଣ୍ଣାଦ ନାମକ ବ୍ରାହ୍ମଣ ଅଯୋଧ୍ୟାପୁରୀରେ ଆପଣଙ୍କ ପାଖରେ ପହଞ୍ଚିଥିଲେ। ସେ ମୋ କଥା ଆପଣଙ୍କୁ ଶୁଣାଇଥିଲେ ଏବଂ ଆପଣ ତାର ଯଥୋଚିତ ଉତ୍ତର ଦେଇଥିଲେ। ସେହି କଥା ଶୁଣି ମୁଁ ଆପଣଙ୍କୁ ଡକାଇବାର ଏହି ଉପାୟ କରିଥିଲି; କାରଣ ମୁଁ ଜାଣିଥିଲି ଯେ ଆପଣଙ୍କ ଛଡ଼ା ଅନ୍ୟ କେହି ଗୋଟିଏ ଦିନରେ ଘୋଡ଼ାଗାଳିତ ରଥରେ ଶହେ ଯୋଜନରୁ ଆସିପାରିବ ନାହିଁ। ମୁଁ ଆପଣଙ୍କ ପାଦ ଛୁଇଁ ଶପଥ କରି କହୁଛି, ମୁଁ କେବେ ମନରେ ମଧ୍ୟ ପରପୁରୁଷଙ୍କୁ ଚିନ୍ତା କରିନାହିଁ। ଯଦି ମୁଁ କେବେ ମନରେ ମଧ୍ୟ ପାପକର୍ମ କରିଥିବି, ତାହେଲେ ସବୁବେଳେ ଓ ସର୍ବତ୍ର ପୃଥିବୀରେ ବିଚରଣ କରୁଥିବା ବାୟୁଦେବ, ଭଗବାନ ସୂର୍ଯ୍ୟ ଏବଂ ମନର ଦେବତା ଚନ୍ଦ୍ର ମୋର ପ୍ରାଣ ହରିନିଅନ୍ତୁ। ଏ ତିନି ଦେବତା ସମଗ୍ର ଭୂମଣ୍ଡଳରେ ବିଚରଣ କରନ୍ତି। ସେମାନେ ସତକଥା କହନ୍ତୁ ଏବଂ ଯଦି ମୁଁ ପାପିନୀ ହୋଇଥିବି, ତାହେଲେ ଆପଣ ମୋତେ ପରିତ୍ୟାଗ କରିଦିଅନ୍ତୁ।'' ଏହି ସମୟରେ ବାୟୁଦେବ ଆକାଶରେ ଥାଇ କହିଲେ, ''ରାଜନ୍! ମୁଁ ସତ୍ୟ କହୁଛି, ଦମୟନ୍ତୀ କୌଣସି ପାପ କରିନାହିଁ। ସେ ତିନି ବର୍ଷକାଳ ତାର ନିର୍ମଳ ଓ ଉଜ୍ଜ୍ୱଳ ସ୍ୱଭାବ ରକ୍ଷା କରିଆସିଛି। ଆମ୍ଭେମାନେ ତାର ରକ୍ଷକରୂପେ ରହିଛୁ ଏବଂ

* **କଥଂ ନୁ ନାରୀ ଭର୍ତ୍ତାରମନୁରକ୍ତମନୁବ୍ରତମ୍।**
**ଉତ୍ସୃଜ୍ୟ ବରୟେଦନ୍ୟଂ ଯଥା ତ୍ୱଂ ଭୀରୁ କର୍ହିଚିତ୍॥**

(ମହାଭା. ବନ.୭୬।୨୨)

ଆମେ ତାର ପାତିବ୍ରତ୍ୟର ସାକ୍ଷୀ* । ସେ ସ୍ୱୟଂବରର ସୂଚନା ଦେଇଥିଲେ କେବଳ ତୁମକୁ ଖୋଜି ପାଇବା ପାଇଁ । ପ୍ରକୃତରେ ଦମୟନ୍ତୀ ତୁମର ନିର୍ଦ୍ଦୋଷ ପତ୍ନୀ । ତୁମେ ଦୁହେଁ ପରସ୍ପରର ଉପଯୁକ୍ତ । ତେଣୁ କିଛି ସନ୍ଦେହ ନ କରି ତାଙ୍କୁ ଗ୍ରହଣ କର ।'' ବାୟୁଦେବ ଏ କଥା କହିଲା ବେଳେ ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା, ଦେବତାମାନଙ୍କର ଦୁନ୍ଦୁଭି ବାଜିଲା । ଶୀତଳ, ମନ୍ଦ ଏବଂ ସୁଗନ୍ଧ ବାୟୁ ପ୍ରବାହିତ ହେଲା । ଏଭଳି ଅଦ୍ଭୁତ ଦୃଶ୍ୟ ଦେଖି ରାଜା ନଳ ନିଜ ମନର ସନ୍ଦେହ ଦୂର କଲେ ଏବଂ ନାଗରାଜ କର୍କୋଟକ ଦେଇଥିବା ବସ୍ତ୍ର ଘୋଡ଼ାଇ ହୋଇ ତାଙ୍କୁ ସ୍ମରଣ କଲେ । ତତ୍‌କ୍ଷଣାତ୍ ତାଙ୍କର ଶରୀର ପୂର୍ବପରି ହୋଇଗଲା । ଦମୟନ୍ତୀ ରାଜା ନଳଙ୍କୁ ପୂର୍ବ ରୂପରେ ଦେଖି ତାଙ୍କୁ କୁଣ୍ଢାଇ ଧରି କାନ୍ଦିପକାଇଲେ । ରାଜା ନଳ ମଧ୍ୟ ତାଙ୍କୁ ଛାତି ଉପରକୁ ଆଉଜେଇ ନେଲେ । ତାପରେ ସେ ପିଲାଦୁହିଙ୍କୁ କୋଳାଗ୍ରତ କରି ସ୍ନେହରେ କଥାବାର୍ତ୍ତା କଲେ । ସାରା ରାତି ଦମୟନ୍ତୀଙ୍କ ସଙ୍ଗେ ବାକ୍ୟାଳାପରେ ବିତିଗଲା ।

ସକାଳ ହେବାରୁ ସ୍ନାନାଦି ସାରି ସୁନ୍ଦର ବସ୍ତ୍ର ପରିଧାନ କରି ନଳ-ଦମୟନ୍ତୀ ରାଜା ଭୀମଙ୍କ ନିକଟକୁ ଯାଇ ତାଙ୍କୁ ପ୍ରଣାମ କଲେ । ଭୀମ ଅତ୍ୟନ୍ତ ଆନନ୍ଦିତ ହୋଇ ସେମାନଙ୍କର ସତ୍କାର କଲେ ଏବଂ ଆଶ୍ୱାସନା ମଧ୍ୟ ଦେଲେ । ଏହି ସମାଚାର ତୁଣ୍ଡବାଇଦ ପରି ଚାରିଆଡ଼େ ପ୍ରଚାରିତ ହୋଇଗଲା । ନଗରର ନରନାରୀ ଆନନ୍ଦଉତ୍ସବ କଲେ । ଦେବତାମାନଙ୍କୁ ପୂଜାର୍ଚ୍ଚନା କରାଗଲା । ଯେତେବେଳେ ରାଜା ଋତୁପର୍ଣ୍ଣ ଜାଣିଲେ ଯେ ବାହୁକ ରୂପରେ ରାଜା ନଳ ହିଁ ଆସିଥିଲେ ଏବଂ ସେ ଏଠାକୁ ଆସି ନିଜ ପତ୍ନୀକୁ ଫେରି ପାଇଲେ, ସେ ବହୁ ଆନନ୍ଦିତ ହେଲେ । ସେ ନଳଙ୍କୁ ପାଖକୁ ଡାକି କ୍ଷମା ମାଗିଲେ । ରାଜା ନଳ ତାଙ୍କ ଉତ୍ତମ ବ୍ୟବହାରର

---

* ଏବମୁକ୍ତସ୍ତଥା ବାୟୁରନ୍ତରିକ୍ଷାଦଭାଷତ ।
ନୈଷା କୃତବତୀ ପାପଂ ନଳ ସତ୍ୟଂ ବ୍ରବୀମି ତେ ॥
ରାଜଞ୍ଛୀଳନିଧିଃ ସ୍ଫୀତୋ ଦମୟନ୍ତ୍ୟା ସୁରକ୍ଷିତଃ ।
ସାକ୍ଷିଣୋ ରକ୍ଷିଣଶ୍ଚାସ୍ୟା ବୟଂ ତ୍ରୀନ୍ ପରିବତ୍ସରାନ୍ ॥
(ମହାଭା. ବନ. ୭୬ । ୩୬, ୩୭)

ପ୍ରଶଂସା କରି ତାଙ୍କର ଅଭ୍ୟର୍ଥନା କଲେ; ଏହାଛଡ଼ା ତାଙ୍କୁ ଅଶ୍ୱବିଦ୍ୟା ମଧ୍ୟ ଶିଖାଇଦେଲେ। ରାଜା ଋତୁପର୍ଣ୍ଣ ଅନ୍ୟ ଏକ ସାରଥିକୁ ନେଇ ନିଜ ନଗରକୁ ଫେରିଗଲେ।

ରାଜା ନଳ ମାସେ ପର୍ଯ୍ୟନ୍ତ କୁଣ୍ଡିନପୁରରେ ରହିଲେ। ଏହା ପରେ ଶ୍ୱଶୁର ଭୀମଙ୍କ ଠାରୁ ବିଦାୟ ମାଗି କିଛି ଲୋକଙ୍କ ସହିତ ନିଷଧ ଦେଶକୁ ଯିବା ପାଇଁ ବାହାରିଲେ। ରାଜା ଭୀମ ଗୋଟିଏ ଉଜ୍ଜ୍ୱଳ ବର୍ଣ୍ଣର ରଥ, ଷୋହଳଟି ହାତୀ, ପଚାଶଟି ଘୋଡ଼ା ଏବଂ ଛଅଶହ ପଦାତିକ ସୈନ୍ୟ ରାଜା ନଳଙ୍କ ସାଥିରେ ପଠାଇଲେ। ନିଜ ନଗରରେ ପ୍ରବେଶ କରି ନଳ ପୁଷ୍କରକୁ ଭେଟିଲେ ଏବଂ କହିଲେ, "ତୁମେ କପଟପୂର୍ଣ୍ଣ ଜୁଆ ପୁଣି ଖେଳିବ, ନା ମୁଁ ଧନୁ ଉଠାଇବି?" ପୁଷ୍କର ହସି ହସି କହିଲା, "ଆଚ୍ଛା! ବାଜି ଲଗାଇବା ପାଇଁ ତୁମକୁ ପୁଣି କେଉଁଠୁ କିଛି ଧନ ମିଳିଯାଇଛି ବୋଧହୁଏ। ଠିକ୍ ଅଛି। ଆସ, ଏଥର ଧନ ସହିତ ତୁମ ଦମୟନ୍ତୀକୁ ମଧ୍ୟ ଜିତି ନେଇଯିବି।" ନଳ କହିଲେ, "ଜୁଆ ଖେଳିବ ଯଦି ଆସ। ଅଧିକ ବକ ବକ କାହିଁକି ହେଉଛ? ଯଦି ହାରିଯିବ କଣ ଅବସ୍ଥା ହେବ ଜାଣିଛ ତ?" ଜୁଆ ଖେଳ ଚାଲିଲା। ରାଜା ନଳ ଗୋଟିଏମାତ୍ର ବାଜିରେ ପୁଷ୍କରର ରାଜ୍ୟ, ରତ୍ନଭଣ୍ଡାର ଏବଂ ସ୍ୱୟଂ ପୁଷ୍କରର ପ୍ରାଣକୁ ମଧ୍ୟ ଜିତିଗଲେ। ସେ ପୁଷ୍କରକୁ କହିଲେ, "ଏଥର ସବୁ ରାଜ୍ୟ ମୋର ହୋଇଗଲା। ଏବେ ତୁମେ ଦମୟନ୍ତୀ ଆଡ଼କୁ ଆଖି ଟେକି ମଧ୍ୟ ଚାହିଁ ପାରିବ ନାହିଁ। ତୁମେ ଦମୟନ୍ତୀର ସେବକ। ଆରେ ମୂଢ଼! ପୂର୍ବରୁ ମଧ୍ୟ ତୁମେ ମୋତେ ହରାଇ ନ ଥିଲ। ସେସବୁ କାମ ଥିଲା କଳିଯୁଗର; ତୁମେ କେବଳ ନିମିତ୍ତମାତ୍ର ଥିଲ। ଏ କଥା ତୁମକୁ ଜଣାନାହିଁ। କଳିଯୁଗର ଦୋଷକୁ ମୁଁ ତୁମ ଉପରେ ଲଦିଦେବାକୁ ଚାହୁଁ ନାହିଁ। ତେଣୁ ତୁମକୁ ମୁଁ ଛାଡ଼ି ଦେଉଛି। ତୁମେ ସୁଖରେ ଜୀବନ ବିତାଅ। ତୁମ ଉପରେ ମୋର ପ୍ରଥମେ ଯେପରି ସ୍ନେହ ଥିଲା, ଏବେ ବି ସେମିତି ରହିବ। ତୁମେ ମୋର ଭାଇ। ମୁଁ କେବେ ତୁମ ଉପରେ ରାଗି ପାରିବି ନାହିଁ। ତୁମେ ଶହେ ବର୍ଷ ବଞ୍ଚ।" ରାଜା ନଳ ଏପରି କହି ପୁଷ୍କରକୁ ଧୈର୍ଯ୍ୟ ଦେଲେ ଏବଂ ତାକୁ ଆଲିଙ୍ଗନ କରିସାରି ଯିବାକୁ ଅନୁମତି ଦେଲେ। ପୁଷ୍କର ହାତ ଯୋଡ଼ି

ନଳଙ୍କୁ ପ୍ରଣାମ କରି କହିଲା, ‘‘ଜଗତରେ ଆପଣଙ୍କ କୀର୍ତ୍ତି ଅକ୍ଷୟ ହୋଇ ରହୁ । ଆପଣ ଦଶହଜାର ବର୍ଷ ସୁଖରେ ଜୀବିତ ରହନ୍ତୁ । ଆପଣ ହେଉଛନ୍ତି ମୋର ଅନ୍ନଦାତା ଏବଂ ପ୍ରାଣଦାତା ।’’ ପୁଷ୍କର ଖୁବ୍ ସତ୍କାର ଓ ସମ୍ମାନ ସହ ମାସେ ପର୍ଯ୍ୟନ୍ତ ରାଜା ନଳଙ୍କ ନଗରରେ ରହି ତା’ପରେ ସୈନ୍ୟ, ସେବକ ଓ ସ୍ୱଜନକୁଟୁମ୍ବଙ୍କ ସହିତ ନିଜ ନଗରକୁ ଫେରିଗଲା । ରାଜା ନଳ ପୁଷ୍କରକୁ ପହଞ୍ଚାଇ ଦେଇ ଆପଣା ରାଜଧାନୀକୁ ଫେରିଆସିଲେ । ସମସ୍ତ ନାଗରିକ, ସାଧାରଣ ପ୍ରଜା ତଥା ମନ୍ତ୍ରୀମଣ୍ଡଳର ଲୋକମାନେ ନଳଙ୍କୁ ରାଜା ରୂପେ ପାଇ ବହୁତ ଖୁସୀ ହେଲେ । ସେମାନେ ପୁଲକିତ ହୋଇ ହାତ ଯୋଡ଼ି ରାଜା ନଳଙ୍କୁ ସ୍ତୁତି କଲେ—‘‘ହେ ରାଜେନ୍ଦ୍ର! ଆମେ ଆଜି ଦୁଃଖରୁ ମୁକ୍ତ ହୋଇ ସୁଖୀ ହେଲୁ । ଦେବଗଣ ଯେପରି ଇନ୍ଦ୍ରଙ୍କର ସେବା କରନ୍ତି, ଆମେସବୁ ସେହିପରି ଆପଣଙ୍କର ସେବା କରିବାକୁ ଆସିଛୁ ।’’

ଘରେ ଘରେ ଆନନ୍ଦର ବାତାବରଣ ଖେଳିଗଲା । ଚାରିଆଡ଼େ ଶାନ୍ତି ବିରାଜମାନ କଲା । ବଡ଼ ବଡ଼ ଉତ୍ସବ ପାଳନ କରାଗଲା । ରାଜା ନଳ ସୈନ୍ୟସାମନ୍ତଙ୍କୁ ପଠାଇ ଦମୟନ୍ତୀଙ୍କୁ ଡକାଇଲେ । ରାଜା ଭୀମ ନିଜର ଅଲିଅଳି କନ୍ୟାକୁ ବହୁପ୍ରକାର ଦ୍ରବ୍ୟ ସହିତ ଶାଶୁଘରକୁ ପଠାଇଲେ । ଦମୟନ୍ତୀ ତାଙ୍କର ପିଲା ଦୁହିଙ୍କୁ ଧରି ରାଜଉଆସରେ ପହଞ୍ଚିଗଲେ । ରାଜା ନଳ ବଡ଼ ଆନନ୍ଦରେ କାଳ କାଟିଲେ । ତାଙ୍କର ଖ୍ୟାତି ଦୂରଦୂରାନ୍ତକୁ ବ୍ୟାପିଗଲା । ସେ ଧର୍ମାନୁସାରେ ପ୍ରଜାପାଳନ କଲେ । ସେ ଅନେକ ପ୍ରକାର ବଡ଼ ବଡ଼ ଯଜ୍ଞ କରି ଭଗବାନଙ୍କୁ ଆରାଧନା କଲେ ।

ବୃହଦଶ୍ୱ କହିଲେ—ହେ ଯୁଧିଷ୍ଠିର! ତୁମକୁ ମଧ୍ୟ କିଛି ଦିନ ପରେ ତୁମର ରାଜ୍ୟ ଏବଂ ସ୍ୱଜନକୁଟୁମ୍ବ ମିଳିଯିବେ । ରାଜା ନଳ ଜୁଆ ଖେଳି ବହୁତ ଦୁଃଖ ଭୋଗିଥିଲେ । ତାଙ୍କୁ ଏକୁଟିଆ ସବୁ ଦୁଃଖ ସହିବାକୁ ପଡ଼ିଥିଲା; କିନ୍ତୁ ତୁମ ପାଖରେ ତ ତୁମର ଭାଇମାନେ, ଦ୍ରୌପଦୀ ଏବଂ ବଡ଼ ବଡ଼ ବିଦ୍ୱାନ ତଥା ସଦାଚାରୀ ବ୍ରାହ୍ମଣ ମଧ୍ୟ ଅଛନ୍ତି । ଏଭଳି ପରିସ୍ଥିତିରେ ଦୁଃଖ କରିବାର କୌଣସି କାରଣ ନାହିଁ । ଜଗତରେ କାହାରି ଅବସ୍ଥା ସବୁବେଳେ ଏକାପରି ରହେ ନାହିଁ । ଏ କଥା ମନରେ ବିଚାର

କରି ସାଂସାରିକ ଉନ୍ନତି-ଅବନତି ବିଷୟରେ ଅଧିକ ଚିନ୍ତିତ ହେବା ଅନୁଚିତ । ନାଗରାଜ କର୍କୋଟକ, ଦମୟନ୍ତୀ, ନଳ ଏବଂ ଋତୁପର୍ଣ୍ଣଙ୍କର ଏହି ଆଖ୍ୟାନ କହିଲେ ଓ ଶୁଣିଲେ କଳିଯୁଗଜନିତ ପାପ ନାଶ ହୁଏ ଏବଂ ଦୁଃଖୀ ମନୁଷ୍ୟକୁ ଧୈର୍ଯ୍ୟ ମିଳିଯାଏ ।



## ସୂକ୍ତିମାଳା

୧. **ବିଶିଷ୍ଟୟା ବିଶିଷ୍ଟେନ ସଙ୍ଗମୋ ଗୁଣବାନ୍ ଭବେତ୍ ।**

(ମହାଭା. ବନ. ୫୩ । ୩୧)

"ଯଦି କୌଣସି ବିଶିଷ୍ଟ ନାରୀର କୌଣସି ବିଶିଷ୍ଟ ପୁରୁଷ ସଙ୍ଗରେ ସଂଯୋଗ ହୋଇଯାଏ, ତେବେ ଏହି ସଂଯୋଗ ବହୁଗୁଣକାରୀ ହୋଇଥାଏ ।"

୨. **ନାସ୍ତି ଭାର୍ଯ୍ୟାସମଂ ମିତ୍ରଂ ନରସ୍ୟାର୍ତ୍ତସ୍ୟ ଭେଷଜମ୍ ॥** (୬୧ । ୩୦)

"ଦୁଃଖୀ ମନୁଷ୍ୟ ପାଇଁ ସ୍ତ୍ରୀ ପରି ଅନ୍ୟ କୌଣସି ମିତ୍ର ବା ଔଷଧ ନାହିଁ ।"

୩. **ନାକାଳେ ବିହିତୋ ମୃତ୍ୟୁର୍ମର୍ତ୍ତ୍ୟାନାମ୍ ।** (୬୩ । ୭)

"ଅସମୟରେ ମନୁଷ୍ୟମାନଙ୍କର ମୃତ୍ୟୁ ହୁଏ ନାହିଁ ।"

୪. **ଚତ୍ୱାରୋ ଏକତୋ ବେଦାଃ ସାଙ୍ଗୋପାଙ୍ଗାଃ ସବିସ୍ତାରାଃ ।**
**ସ୍ୱଧୀତା ମନୁଜବ୍ୟାଘ୍ର ସତ୍ୟମେକଂ କିଲୈକତଃ ॥**

(୬୪ । ୧୭)

"ଏକପକ୍ଷରେ ଅଙ୍ଗ ଓ ଉପାଙ୍ଗ ସହିତ ଚ୍ୱରୋଟି ଯାକ ବେଦର ବିସ୍ତାରପୂର୍ବକ ଅଧ୍ୟୟନକୁ ଏବଂ ଅନ୍ୟପକ୍ଷରେ କେବଳ ସତ୍ୟଭାଷଣକୁ ରଖି ଯଦି ତୁଳନା କରାଯାଏ, ତେବେ ପରବର୍ତ୍ତୀଟି ନିଶ୍ଚୟ ଭାରୀ ହେବ ।"

୫. **'ନାପ୍ରାପ୍ତକାଲୋ ମ୍ରିୟତେ'** (୬୫ । ୩୯)

"ଯାହାର ମୃତ୍ୟୁ ସମୟ ନ ଆସିଛି, ଇଚ୍ଛା କଲେ ବି ସେ ମରିପାରେ ନାହିଁ ।"

୬. **ନ ହ୍ୟଦୈବକୃତଂ କିଞ୍ଚିନ୍ନରାଣାମିହ ବିଦ୍ୟତେ ।** (୬୫ । ୪୦)

"ମନୁଷ୍ୟକୁ ଏଭଳି କୌଣସି ସୁଖ ବା ଦୁଃଖ ମିଳେ ନାହିଁ, ଯାହା କି ବିଧାତା ଦେଇ ନ ଥିବେ ।"

୭. **ଭର୍ତ୍ତା ନାମ ପରଂ ନାର୍ଯ୍ୟା ଭୂଷଣଂ ଭୂଷଣୈର୍ବିନା ।** (୬୮ । ୧୯)

"ପ୍ରକୃତରେ ସ୍ୱାମୀ ହିଁ ନାରୀର ସର୍ବଶ୍ରେଷ୍ଠ ଆଭୂଷଣ । ସ୍ୱାମୀ ରହିଲେ ନାରୀ ବିନା ଆଭୂଷଣରେ ମଧ୍ୟ ସୁଶୋଭିତ ହୋଇଥାଏ ।"

୮. **ସର୍ବଃ ସର୍ବଂ ନ ଜାନାତି ସର୍ବଜ୍ଞୋ ନାସ୍ତି କଶ୍ଚନ ।**
**ନୈକତ୍ର ପରିନିଷ୍ଠାସ୍ତି ଜ୍ଞାନସ୍ୟ ପୁରୁଷେ କ୍ୱଚିତ୍ ॥** (୭୨ । ୮)

"ସବୁ ଲୋକ ସବୁ କଥା ଜାଣନ୍ତି ନାହିଁ; ଜଗତରେ କେହି ବି ସର୍ବଜ୍ଞ ନାହିଁ ତଥା ଜଣେ ବ୍ୟକ୍ତିଠାରେ ସମସ୍ତ ଜ୍ଞାନ ରହିବା ସମ୍ଭବ ନୁହେଁ ।"

୯. **ବୈଷମ୍ୟମପି ସମ୍ପ୍ରାପ୍ତା ଗୋପାୟନ୍ତି କୁଳସ୍ତ୍ରିୟଃ ।**
**ଆତ୍ମାନମାତ୍ମନା ସତ୍ୟୋ ଜିତଃ ସ୍ୱର୍ଗୋ ନ ସଂଶୟଃ ॥**
(୭୦ । ୮; ୭୪ । ୨୫)

"ଉତ୍ତମ କୁଳର ନାରୀମାନେ ଯେତେ ଭୀଷଣ ସଂକଟରେ ପଡ଼ିଲେ ମଧ୍ୟ ନିଜକୁ ରକ୍ଷା କରନ୍ତି । ଏହା ନିଃସନ୍ଦେହ ଯେ ଏପରି କରି ସେମାନେ ସ୍ୱର୍ଗ ଓ ସତ୍ୟ ଉପରେ ବିଜୟ ଲାଭ କରିଯାଆନ୍ତି ।"

୧୦. **ରହିତା ଭର୍ତୃଭିଶ୍ଚାପି ନ କ୍ରୁଧ୍ୟନ୍ତି କଦାଚନ ।**
**ପ୍ରାଣାଂଶ୍ଚାରିତ୍ରକବଚ୍ଚନ୍ ଧାରୟନ୍ତି ବରସ୍ତ୍ରିୟଃ ॥**
(୭୦ । ୯; ୭୪ । ୨୬)

"ଶ୍ରେଷ୍ଠ ନାରୀମାନେ ସ୍ୱାମୀ ଦ୍ୱାରା ପରିତ୍ୟକ୍ତା ହେଲେ ମଧ୍ୟ ତାଙ୍କ ଉପରେ କ୍ରୋଧ କରନ୍ତି ନାହିଁ । ସେ ସର୍ବଦା ସଦାଚାରରୂପୀ କବଚ ଦ୍ୱାରା ଆବୃତ ହୋଇ ପ୍ରାଣ ଧାରଣ କରନ୍ତି ।"

୧୧. **ଅସ୍ଥିରତ୍ୱଂ ଚ ସଂଚିନ୍ତ୍ୟ ପୁରୁଷାର୍ଥସ୍ୟ ନିତ୍ୟଦା ।**
**ତସ୍ୟୋଦୟେ ବ୍ୟୟେ ଚାପି ନ ଚିନ୍ତୟିତୁମର୍ହସି ॥** (୭୯ । ୧୨)

"ମନୁଷ୍ୟକୁ ପ୍ରାପ୍ତ ହେଉଥିବା ସମସ୍ତ ବିଷୟ ସର୍ବଦା ଅସ୍ଥିର ଓ ବିନାଶଶୀଳ । ଏହା ବିଚାର କରି ସେଗୁଡ଼ିକ ମିଳିଗଲେ କିଂବା ନଷ୍ଟ ହୋଇଗଲେ ଆଦୌ ଚିନ୍ତା କରିବା ଉଚିତ ନୁହେଁ ।"

୧୨. **ବିଷମାବସ୍ଥିତେ ଦୈବେ ପୌରୁଷେଽଫଲତାଂ ଗତେ ।**
**ବିଷାଦୟନ୍ତି ନାତ୍ମାନଂ ସତ୍ତ୍ୱୋପାଶ୍ରୟିଣୋ ନରାଃ ॥** (୭୯ । ୧୪)

"ଯେତେବେଳେ ଦୈବ (ପ୍ରାରବ୍ଧ) ପ୍ରତିକୂଳ ହୋଇଯାଏ ଏବଂ ପୁରୁଷାର୍ଥ ନିଷ୍ଫଳ ହୋଇଯାଏ, ସେତେବେଳେ ମଧ୍ୟ ସତ୍ତ୍ୱଗୁଣର ଆଶ୍ରୟ ନେଇଥିବା ଲୋକେ ମନଦୁଃଖ କରନ୍ତି ନାହିଁ ।"

॥ ଜୟ ଶ୍ରୀଚନ୍ଦ୍ରମୌଳି ॥



# Gita Press, Gorakhpur Own shop / Branch

| | | |
|---|---|---|
| Bengaluru -560027 | 7/3, 2nd Cross, Lalbagh Road<br>Mob. 8310731545 | ✆ (080) 22955190 |
| Bhilwara -311001 | G7, Aakar Tower, C Block, Gandhinagar<br>Mob. 9414114291, 9928527747 | ✆ (01482) 248330 |
| Coimbatore -641018 | Gita Press Mansion, 8/1M, Racecourse<br>Mob. 9943112202, 7909130623, 8825776969 | |
| Cuttack -753009 | Bhartiya Towers, Badam Badi<br>Mob. 8093091800, 9338091800 | ✆ (0671) 2335481 |
| Chennai -600010 | Electro House No. 23, Ramanathan Street, Kilpouk<br>Mob. 7200050708 | ✆ (044) 26615959, 26615909 |
| Delhi - 110006 | 2609, Nai Sarak<br>Mob. 7289802606, 9999732072 | ✆ (011) 23269678, 23259140 |
| Gorakhpur - 273005 | Gita Press—P.O. Gita Press<br>Mob. 7985282936, 9984889884 | ✆ (0551) 2334721, 2331250, 2331251<br>e-mail:booksales@gitapress.org |
| Haridwar - 249401 | Sabjimandi, Motibazar<br>Mob. 9760275146, 9675721305 | ✆ (01334) 222657 |
| Hyderabad - 500095 | 41, 4-4-1; Dilshad Plaza, Sultan Bazar<br>Mob. 9573650611, 9291205498 | ✆ (040) 24758311, 66758311 |
| Indore - 452001 | G-5, Shree Vardhan, 4 R.N.T. Marg<br>Mob. 9630111144 | ✆ (0731) 2526516, 2511977 |
| Jalgaon - 425001 | 7, Bhim Singh Market, Near Railway Station<br>Mob. 9422281291, 7020118397 | ✆ (0257) 2226393, 2220320 |
| Kanpur - 208001 | 24/55, Birhana Road<br>Mob. 8299309991, 9839922098 | ✆ (0512) 2352351 |
| Kolkata - 700007 | Gobind Bhavan; 151, Mahatma Gandhi Road<br>Mob. 9831004222, 7688037682 | ✆ (033)22680251, 22686894 |
| Mumbai - 400002 | 282, Samaldas Gandhi Marg (Princess Street)<br>Mob. 8108529464, 9768954885, 8369536765 | ✆ (022) 22030717 |
| Nagpur - 440002 | Shriji Kripa Complex, 851, New Etawari Road<br>Mob. 9420410735, 8830154589 | ✆ (0712) 2734354 |
| Patna - 800004 | Ashok Rajpath, Opposite Women's Hospital<br>Mob. 9771787992, 8210494381 | ✆ (0612) 2300325 |
| Raipur - 492009 | Mittal Complex, Ganjpara, Telghani Naka Chowk, (Chhattisgarh)<br>Mob. 9329326200, 7879845886, 7999909243 | ✆ (0771) 4034430, 4035310 |
| Ranchi - 834001 | Cart Sarai Road, Upper Bazar, Birla Gaddi, Ist floor<br>Mob. 7004458358 | ✆ (0651) 2210685 |
| Rishikesh -249304 | Gita Bhawan, P.O.-Swargashram<br>Mob. 6397500736, 9837775919 | ✆ (0135) 2430122, 2432792 |
| Surat - 395001 | 2016 Vaibhav Apartment, Bhatar Road<br>Mob. 9374047258, 9723397258 | ✆ (0261) 2237362, 2238065 |
| Varanasi - 221001 | 59/9, Nichibag Mob. 9839900745, 9140256821 | ✆ (0542) 2413551 |
| Kathmandu - 44600 (Nepal) | Shop N0. 6, 7, 8 Madhavaraj Sumargi Smriti Bhavan Vanakali, Pashupati Kshetra<br>WhatsApp &Mob.+977-9849736967, 9841432700, 9801056107, 9841056107<br>e-mail:gitapress.nepal@gmail.com | |

**Gita Press, P.O. Gita Press, Gorakhpur—273005 (INDIA)**

**Phone : (0551) 2334721, 2331250, 2331251, Mob.: 7985282936, 9984889884**

For Online purchase of Gitapress Publications visit : web : www.gitapress.org, & gitapressbookshop. in

Anyone can book order thru e-mail : booksales@gitapress.org & online@gitapress.org

**Code 1203▲**